ଦୀନକୃଷ୍ଣ ଦାସଙ୍କ ରଚିତ

# ନାମରତ୍ନ ଗୀତା ।

## ଦ୍ୱିତୀୟ ଓ ତୃତୀୟ ଖଣ୍ଡ ।

ମାଲ୍ଲିର ଶ୍ରୀ ଅମୃତଲାଲ ସରକାରଙ୍କ ଦ୍ୱାରା
ପ୍ରଥମବାର ପ୍ରକାଶିତ ।



CALCUTTA:
PRINTED & PUBLISHED BY SARAT CH. ROY AT
THE ANGLO-SANSKRIT PRESS, 51, SANKARITOLA.
1917.

ମୂଲ୍ୟ ପାଞ୍ଚଅଣା ମାତ୍ର ।

## ଦ୍ୱିତୀୟ ଖଣ୍ଡ ସୂଚୀପତ୍ର ।

---

ତୃତୀୟ ଖଣ୍ଡ ।






# ନାମରତ୍ନଗୀତା ।

## ଦ୍ୱିତୀୟଖଣ୍ଡ ।

---

### ଷଷ୍ଠଦଂଶ ଅଧ୍ୟାୟ ।

### ଅର୍ଜୁନ ଉବାଚ ।

ବନ୍ଦଇ ଯେ ଜଗନ୍ନାଥ କ୍ଷିରସିନ୍ଧୁ ବାସୀ । ଲୀଳା କରୁଅଛ ନାଥ ନୀଳାଦ୍ରିରେ ବସି ॥ ସେହୁ ପାଦପଦ୍ମେ ମୋର ରହୁଥାଉ ମତି । ଦୀନକୃଷ୍ଣ ଦାସ ତାହା ଭାବେ ଦିବା ରାତି ॥ ଶଙ୍ଖଚକ୍ର ଗଦା ପଦ୍ମ ଚତୁର୍ଭୁଜେ ଶୋଭେ । ଅନନ୍ତ ରୂପକୁ ଯାର ଚିହ୍ନଣା ନ ଯାଏ ॥ ଭକ୍ତମାନଙ୍କ ଶଙ୍ଖାଳି ଅଟେ ମୁକ୍ତିଦାତା । ଏମନ୍ତ ପ୍ରଭୁର ପାଦେ ଲୋଟୁ ମୋର ମଥା ॥ ଜଗନ୍ନାଥ ଜଗନ୍ନାଥ ଭଜ ନିରନ୍ତର । ଭବପାର ହୋଇଯାଅ ଘୋର ପାରାବାର ॥ ଅନାଥର ନାଥ ସେ ଯେ କ୍ଷିରସିନ୍ଧୁ ବାସୀ । ସର୍ବ୍ବପାପ ଦୂର କର ଦିବା ରାତ୍ର ଘୋଷି । ଏହୁ ନାମ ଗୋଟି ଅଟେ ପଥକୁ ଶଙ୍ଖାଳି । ଉଦ୍ଧ କେତେ ପାପୀମାନେ ସ୍ୱର୍ଗେ ଗଲେ ଚଳି ॥ ଏକଦିନେ ଅର୍ଜୁନ ବୋଇଲେ ଦୀନବନ୍ଧୁ । କଥାଏ ପଚାରୁ ଅଛୁ କହ କୃପାସିନ୍ଧୁ ॥ ପୁଣ୍ୟବନ୍ତ ଲୋକର ଯେ ଦାନ ଧ୍ୟାନ ସାର । ଅଜ୍ଞାନେ ପାତକ କଲେ ଯାଇନ୍ତି କି ପାର ॥ ଶ୍ରୀହରି ବୋଇଲେ ପାପ କରିଥାଇ ଯେତୁ । କୋଟିଏ ଜନ୍ମରେ ନାଶ ନ ଯାଇନ୍ତି ସେତୁ ॥ ପୁଣ୍ୟ ଅରଜିଲେ ସିନା ପାପ ଯାଏ ଭଙ୍ଗ । ଔଷଧ ଦିହଲେ ଯେସନେ ଭଲ ହୋଏ ରୋଗ ॥ ନୃଗରାଜା ନାମେଣ ଅବନୀର ତନୟ । ପାଞ୍ଚସପ୍ତ ଧେନୁଦାନ ଦେଲାକ ସେ ରାୟ ॥ ତହିଁରୁ ଗୋଟିଏ ଗାଈ ପଳାଇଣ ଆସି । ରାଜା ନ ଜାଣଇ ସେ ଗୋଷ୍ଠରେ ଥିଲା ପଶି ॥ ନ ଜାଣି ନୃପତି ତାହା ପୁଣି ଦେଲା ଦାନ । ତହିଁର ପ୍ରସ୍ତାବ ତୋତେ କହିବା ଅର୍ଜୁନ ॥ ସାବଧାନ ହୋଇ ତୁ ହେ ଶୁଣ କୁନ୍ତୀସୁତ । ଭାଗବତ ଦିବ୍ୟରସ ପୁରାଣ ଅମୃତ ॥ ଦିନେ କରିଥିଲୁଁ ଅମ୍ଭେ ଦ୍ୱାରିକାନଗର । ଛୋଟା ବୁଲିବାକୁ ଗଲେ

ସମସ୍ତ ଭ୍ରମର ॥ ଅର୍ଜୁନ ଯେ ଶାମ୍ବ ଗଦ ସହିତେ ଯେତେକ । ବନେ ସେ ଅନେକ କଲେ କ୍ରୀଡ଼ା କଉତୁକ ॥ ଏମନ୍ତେ ସେ ଜଳପାନ ସମସ୍ତେ ଇଚ୍ଛିଲେ । ବନସ୍ତ ମଧ୍ୟରେ ଏକ କୂପ ସେ ଦେଖିଲେ ॥ ସମସ୍ତ ଭ୍ରମର ଯାଇଁ କୂପତଟେ ମିଳି । ଜଳର ନିମନ୍ତେ ସେଠୁ ଚାହିଁଲେ ନିରେଖି । ତୃଣର ଗହଳେ ଯେ ଦିଶଇ ଅନ୍ଧକାର । ଅଦ୍ଭୁତ ଜନ୍ତୁଏ ଅଛି ତହିଁର ଭିତର ॥ ଦିଶଇ ଯେ ପ୍ରତ୍ୟକ୍ଷେ ସେ ସ୍ଥୂଳ ଆକାର । ତାହା ଦେଖି ମନେ ମନେ କରନ୍ତି ବିଚାର ॥ ଏ କେବଣ ଜନ୍ତୁ ଏହା ଦେଖିଲକ ନାହିଁ । ଦେଖି କରି ଚିହ୍ନିଲେ ଯେ କୃକଳାଶ ଏହି ॥ ଏକର ମୁଖ ଅନେକ ହେଲେ ଚାହାଁଚାହିଁ । ସବୁ ଯୋଏ ବୁଲାଉଛନ୍ତି ଆଙ୍ଗୁଳି ଦେଖାଇ ॥ ସମସ୍ତେହେଁ ବୋଲୁଛନ୍ତି ଦେଖିବା ଉଦ୍ଧାର । ଲଙ୍ଗୁଡ଼ରେ ଦଉଡ଼ିଏ ବାନ୍ଧିଲେ ତାହାର ॥ ଦଉଡ଼ି ଧରିଣ ସେ ଟାଣନ୍ତି ଜଣେ ଜଣେ । କେବେହେଁ ସେ ନ ଟଳଇ ତିଳେକ ପ୍ରମାଣେ ॥ ନିରାଶ ହୋଇଣ ସେ ସମସ୍ତେ ଚଳିଗଲେ । ଦ୍ୱାରିକାପୁରରେ ଯାଇଁ ପ୍ରବେଶ ହୋଇଲେ ॥ ଆମ୍ଭଙ୍କୁ ସେମାନେ କହିଲେକ ବେଗେ ଯାଇଁ । ଅଦ୍ଭୁତ କଥାଏ ଦେଖି ଅଇଲୁଁ ଗୋସାଇଁ ॥ ବନସ୍ତ ମଧ୍ୟରେ ଗମି ବୁଲି ଯାଉଥିଲୁଁ । ତହିଁର ମଧ୍ୟରେ ଏକ କୂପ ଯେ ଦେଖିଲୁଁ ॥ ତହିଁର ମଧ୍ୟରେ ଅଛି ଏକ କୃକଳାଶ । ଗୋଧିକା ପରାଏ ତାର ସ୍ୱରୂପ ପ୍ରକାଶ ॥ ସେ କଥା ଶୁଣିଣ ଆମ୍ଭେ ଗଲୁ ବେଗ ହୋଇ । କୂପର ମଧ୍ୟରେ ତାକୁ ଦେଖିଲୁଁ ସେ ଯାଇଁ ॥ ଗୋଧିକା ସଦୃଶ ରୂପ ଦିଶୁଅଛି ସେହି । କୂପର ଭିତରୁ ତାକୁ ଉଦ୍ଧରିଲୁଁ ଯାଇଁ ॥ ଆମ୍ଭେ ତାକୁ କୂପରୁ କାଢ଼ିଲୁଁ ତତକ୍ଷଣ । ଭୂମିରେ ପଡ଼ିଣ ତାର ଛାଡ଼ିଗଲା ପ୍ରାଣ ॥ ସେ ଗର୍ଭରୁ ଦିବ୍ୟ ରୂପ ବାହାର ଯେ ହୋଇ । ଆମ୍ଭର ଚରଣ ତଳେ ପଡ଼ିଲାକ ସେହି ॥ ଅପୂର୍ବ ସୁନ୍ଦର ରୂପ ବୟସ ପଞ୍ଚାନ୍ତର । ସୁର ନର ପ୍ରାଏ ଦିଶୁଅଛି ତା ଆକାର ॥ ତାହା ଦେଖି ଆମ୍ଭେ ତାକୁ ପୁଚ୍ଛାକଲୁଁ ସବୁ । କେଉଁ ଦୋଷେ କୃକଳାଶ ହୋଇଥିଲୁ ବାରୁ ॥ ପୂର୍ବଜନ୍ମ କଥା ତୋର କହ ମୋ ଆଗର । ତାହା ଶୁଣି ମନଭ୍ରାନ୍ତି ଛାଡ଼ିବ ଆମ୍ଭର ॥ ଏବଚନ ଶୁଣିଣ ଯେ କହେ ନୃପମଣି । ସାବଧାନ ହୋଇଣ ତୁ ଶୁଣ ବୀରମଣି ॥ ନୃପ ଯେ କହଇ ପ୍ରଭୁ କହୁଅଛି ମୁହିଁ । ଇକ୍ଷ୍ୱାକୁବଂଶରେ ଜନ୍ମ ନୃଗରାଜ ମୁହିଁ ॥ ଜଗତର ମଧ୍ୟରେ ଅଛନ୍ତି ଯେତେ ଦାତା । ସେମାନଙ୍କଠାରୁ ମୁଁ ଅଟଇ ମହାଦାତା ॥ ଏଥିର ପ୍ରସ୍ତାବ ପ୍ରଭୁ ଅଛ ଆମ୍ଭେ ଜାଣି । ତୁମ୍ଭ ନିକଟରେ କି କହିବ ପଦ୍ମାଣି ॥ ସର୍ବଭୂତ ଆତ୍ମା ଅଟ ତୁମ୍ଭେତ ଶ୍ରୀହରି । ଅଶେଷ ଜ୍ଞାନ ତୁମ୍ଭର ଦେହେ ଅଛି ପୂରି ॥ ସକଳ ହୃଦୟ କଥା ତୁମ୍ଭେ ସର୍ବ ଜାଣ । ବିପ୍ରଙ୍କୁ ଅନେକ ମୁଁ ଯେ ଦେଇ ଗୋରୁ ଦାନ ॥ ସଂଖ୍ୟା କରିଣ ତା ମୁହିଁ କହିବଇଁ କେତେ । ଏ ମହୀମଣ୍ଡଳ ମଧ୍ୟେ ଧୂଳି ଅଛି ଯେତେ ॥ ଅନ୍ନ ବସ୍ତ୍ର ଅଳଙ୍କର ଗଜ ଅଶ୍ୱ ଯେତେ । ନାନା ଦ୍ରବ୍ୟ ଦାନ ଦେଇ ବିପ୍ରଙ୍କର ହସ୍ତେ ॥ ଏହିପରି ପ୍ରତିଦିନ ଦିଏ ବହୁ ଦାନ । ଏଥିର ପ୍ରସ୍ତାବ କହୁଅଛି ପ୍ରଭୁ ଶୁଣ । ବ୍ରାହ୍ମଣର ଗୋରୁଟି ମୋ ଗୋଷ୍ଠେ ଥିଲା ପଶି । ତାହାକୁ ମୁଁ

ଆଣି ପୁଣି ଦାନ ଦେଲ ଋଷି ॥ ବ୍ରାହ୍ମଣର ଗୋରୁ ବୋଲି ଏହା ନ ଜାଣଇ । ବିପ୍ରେକ ହସ୍ତରେ ତାକୁ ଦାନ ଦେଲ ନେଇ ॥ ଆମ୍ଭଠାରୁ ଦ୍ୱିଜବର ଦାନ ଘେନି ଯାନ୍ତେ । ସେ ଗୋରୁକୁ ଦେଖି ପଥେ ବ୍ରାହ୍ମଣର ହସ୍ତେ ॥ ଦେଖି ପୂର୍ବ ବିପ୍ର ଯେ ଚାହିଁଲା ଗୋରୁ ମୋର । ମୋର ଗୋରୁ କିପାଇଁ ନେଉଛୁ ଦ୍ୱିଜବର ॥ ଅନେକ ଦିନରୁ ମୋର ହଜିଥିଲା ଗାଈ । ତାହାକୁ ଯେ ଖୋଜିବାକୁ ଆସିଅଛୁ ମୁହିଁ ॥ ଏତେ କହି ଦ୍ୱିଜବର ଧରିଲା ଲାଙ୍ଗୁଳ । ଝିଙ୍କା ଝିଙ୍କି ବେନିଜନ ହୋଇଲେ ସେଠାର ॥ ମରାମରି ହୋଇଣ ସେ ଗଡ଼ାଗଡ଼ି ହେଲେ । ମୋହର ନିକଟେ ଆସି ପ୍ରବେଶ ହୋଇଲେ ॥ କୋପେ ପୂର୍ବ ବିପ୍ର ବୋଇଲା ମୋ ମୁଖ ଚାହିଁ । ତୁମ୍ଭେ ଦାନ ଦେଇଥିଲ ମୋତେ ଏହି ଗାଈ ॥ ଚରିବା ନିମନ୍ତେ ଗୋଷ୍ଠ ସଙ୍ଗେ ଆସିଥିଲା । ଗୋଷ୍ଠରୁ ମୋ ଗାଈ ଏହି ଚୋରିକରି ନେଲା ॥ ଏହା ଶୁଣି ଆମ୍ଭେ ଯେ ହୋଇଲୁଁ ସ୍ତମ୍ଭୀଭୂତ । ବ୍ରାହ୍ମଣ କୋପ ହୋଇଲେ ଯିବି ନର୍କପଥ ॥ ଏମନ୍ତ ବିଚାରି ବହୁ ମନେ ଚିନ୍ତାକଲି । ବ୍ରାହ୍ମଣକୁ ପ୍ରବୋଧନା କରିଣ କହିଲି ॥ ବ୍ରାହ୍ମଣଙ୍କ ପାଦେ ମୁହିଁ ପଡ଼ିଲଇ ଯାଇଁ । ଏହି ଧେନୁ ସଦୃଶରେ ଦେବି ଲକ୍ଷେଗାଈ ॥ କୋପଭର ହୋଇ ବିପ୍ର ମୋର ମୁଖ ଚାହିଁ । ବୋଇଲେ ଲକ୍ଷେଗାଈରେ ମୋର କାର୍ଯ୍ୟ ନାହିଁ ॥ ଦାନ ଦେଇ ଯେଉଁ ଲୋକ ପୁଣି ଦାନ ହରେ । ସେହି ପୁଣି ଅନ୍ତେଣ ନରକ ଭୋଗ କରେ ॥ ଏତେ ବୋଲି ବିପ୍ରବର କୋପଭର ହେଲା । ମନ ଦୁଃଖେ ଆପଣାର ମନ୍ଦିରକୁ ଗଲା ॥ ସେ ଯାଆନ୍ତେ ଗୋରୁଗୋଷ୍ଠୀ ପ୍ରତିଗ୍ରାହୀ ନେଲା । ଏମନ୍ତେଣ ଆହେ ପ୍ରଭୁ କେତେ ଦିନ ଗଲା ॥ କିଛୁଦିନ ଅନ୍ତେ ମୋର ହୋଇଲା ମରଣ । ଯମଦୂତେ ଆସିଣ ବାନ୍ଧିଲେ ତତକ୍ଷଣ ॥ ବାନ୍ଧିକରି ଯମଦୂତେ ବେଗେ ଘେନି ଗଲେ । ଯମରାଜା ସନମୁଖେ ନେଇ ଉଭା କଲେ ॥ ବୋଲନ୍ତି ହେ ଯମଦେବ ନୃଗରାଜା ଏହି । ଭୁଲରେ ବିପ୍ରକୁ ଦାନ ଦେଇଥିଲେ ଗାଈ ॥ ଦେଖିକରି ଯମରାଜା କଲା ବହୁ ମାନ୍ୟ । ବୋଇଲା ବହୁତ ରାଜା କରିଅଛ ପୁଣ୍ୟ ॥ ଏ କିଞ୍ଚିତ ପାତକକୁ ଦଣ୍ଡ ଏବେ ଘେନ । ଦ୍ୱାପରଯୁଗରେ କୃଷ୍ଣ ହୋଇବେ ଯେ ଜନ୍ମ ॥ କୃକଳାଶ ସ୍ୱରୂପରେ କୂପମଧ୍ୟେ ଥିବ । ପ୍ରଭୁଙ୍କ ଦର୍ଶନେ ରାଜା ମୁକତି ପାଇବ ॥ ପୂର୍ବର ସୁକୃତବଳେ ପାଇଲି ଦର୍ଶନ । କି ଆଜ୍ଞା ହେଉଛି ମୋତେ କହ ଜନାର୍ଦ୍ଦନ ॥ ଅମୃତ ଦର୍ଶନେ ରାଜା ବୈକୁଣ୍ଠକୁ ଗଲା । ଦୀନକୃଷ୍ଣ ଦାସ ଏହା ଗୀତରେ କହିଲା ॥

ଇତି ଶ୍ରୀ ନାମରହସ୍ୟଗୀତାୟାଂ ଶ୍ରୀହରିଅର୍ଜ୍ଜୁନ ସମ୍ବାଦେ ନାମ

ଷଷ୍ଠଦଂଶୋଽଧ୍ୟାୟଃ ।

---

## ସପ୍ତବିଂଶ ଅଧ୍ୟାୟ ।

*ଅର୍ଜ୍ଜୁନ ବୋଇଲେ ତୁମ୍ଭେ ଶୁଣ ଶ୍ରୀବନମାଳୀ । ଅବର କଥାଏ ମୋତେ* କହ କର ଶାନ୍ତ ॥ ତେଣୁକରି ମହାପ୍ରଭୁ ପଚାରୁଛି ତୋତେ । ଦ୍ୱାରିକାର ତୁଳସୀ ରତ୍ନମାନ ଯେତେ ॥ ସମସ୍ତେତ ନିରନ୍ତରେ କରୁଥାନ୍ତି ସେବା । ସେ ରତ୍ନ ମହିମା ମୁଁ ନ କହିବ ଅବା ॥ ତେଣୁ କରି ତୁମ୍ଭଙ୍କୁ ପଚାରୁଅଛି ହରି । ଏ କଥା ଗୋଷ୍ଟାକ ମୋତେ କହ ଯେତକରି । କେ କେ ରତ୍ନ ହୋଇଛି ବିଧ୍ୱମତେ କର୍ମ୍ମ । କେଉଁ ରତ୍ନରେ ଲଗିଅଛି ଇନ୍ଦୁସମ ॥ କେବଣ ରତ୍ନରାରେ ଶକତ ପ୍ରାୟଶୋଭା । କେବଣ ରତ୍ନରାରେ ସୁବର୍ଣ୍ଣ ସବୁ ସଜା ॥ କେବଣ ରତ୍ନରା ପଦ୍ମଫୁଲ ପ୍ରାୟ ଶୋଭା । କେଉଁ ରତ୍ନରା ନିର୍ମ୍ମାଣ ଷଟ୍‌କୋଣ ଅବା ॥ କେବଣ ରତ୍ନରା ରୂତ ଡାଲେ ପରସିଛି । କେବଣରତ୍ନରାଗୋଷ୍ଠାଅଷ୍ଟକୋଣେବିଧ୍ୱ ॥ କେବଣରତ୍ନରାରେଅଛଇ ଷୋଳକୋଣ । ବତିଶକୋଣେ କେବଣରତ୍ନରାନିର୍ମ୍ମାଣ ॥ କେବଣରତ୍ନରା ଯେ ପ୍ରସ୍ତରେପୀଠ ବନ୍ଧା । ଷଷ୍ଠିକରେ ନିର୍ମ୍ମାଣ ଯେ ପଦ୍ମରାଗ ଖଣ୍ଡା ॥ ବିବିଧ ପ୍ରକାରେ ଦିବ୍ୟ ରତ୍ନ ନିର୍ମ୍ମାଣ । ଛଷମେଲା ପାଟରେ ଯେ ରତ୍ନ ନିପୁଣ ॥ ବିବିଧ ବସନ ତହିଁ ମଣ୍ଡନ ଅପାର । ନେତର ଚାନ୍ଦୁଆମାନ ଉଡ଼େ ଫରହର ॥ ତହିଁର ଉପର ଯେ ତୁଳସୀବୃକ୍ଷ ଶୋଭା । ତହିଁର ମହିମା ମୁହିଁ ନ କହିବ ଅବା ॥ ସେ ତୁଳସୀବୃକ୍ଷର ଅଟଇ ଦିବ୍ୟ ବାସ । ତାହାକୁ ସୁଙ୍ଘିଲେ କୋଟି ପାପ ଯାଇ ନାଶ ॥ ଦେବଙ୍କୁ ଦୁର୍ଲ୍ଲଭ ସେ ଯେବଣ ବୃକ୍ଷବର । ଦ୍ୱାରିକା ଭୁବନେ ସେହି ସବୁ ପୁରେ ସାର ॥ ପ୍ରସନ୍ନ ବଦନେ ମୋତେ କହ ଚକ୍ରଧର । ପୂର୍ବକାଳେ ଏ ତୁଳସୀ କାହିଁ ଅବତାର ॥ ଶ୍ରୀହରି ବୋଇଲେ ତୁମ୍ଭେ ଶୁଣ କୁନ୍ତୀସୁତ । ଯେଉଁ କଥା ଶୁଣିଲେ ଦୁରିତ ହୁଏ ହତ ॥ ତୁଳସୀର ମହିମା ଯେ ପୁଚ୍ଛା କଲୁ ମୋତେ । କହିଲେ ନ ସରିବ ତା କେ କରିବ ପ୍ରତେ ॥ ପରମା ଶକତି ସେ ପଦକ୍ଷ ମହାସତୀ । ସ୍ୱଧା ପ୍ରିୟସଖୀ ସେ ମଣ୍ଡରେ ଉତପତି ॥ ଗୋଲୋକ ଭୂମିରେ ତାର ସର୍ବଦା ବିଶ୍ରାମ । ଗୋମାତା ପାଖୁଣେ ଥାଇ ତ୍ରିପୁରା ତା ନାମ ॥ ଚତୁର୍ଦ୍ଧା ପ୍ରକାରେ ସେବା ନିତ୍ୟସ୍ଥଳ ଦ୍ୱାର । ଚଉଷଠି ସହସ୍ର ଗୋପୀଙ୍କ ମଧ୍ୟେ ସାର ॥ ସମସ୍ତଙ୍କ କଥା ସେ ଜାଣଇ ସିନା ବାମା । ଗୋପୀଙ୍କର ମହିମା ଯେ ଯେମନ୍ତ ଗାରିମା ॥ ଯାର ଯେଉଁ ସେବା ସେହିଠାରେ ତାକୁ ଖଞ୍ଜେ । ବଚନରେ ବାନ୍ଧିଣ ସବୁରି ମନ ରଞ୍ଜେ ॥ ମୋର ସଙ୍କେତରେ ସେ ଯେ ଅଟଇ ଚାରେଣୀ । ଦ୍ୱାଦଶମଣ୍ଡଳରେ ରମଇ ମନ ଜାଣି ॥ ସବୁରି ଉପରେ ଶ୍ରେଷ୍ଠା ତ୍ରିପୁରା ସୁନ୍ଦରୀ । ନିତ୍ୟସ୍ଥଳେ ନିତ୍ୟଦ୍ୱାରେ ଥାଇ ସେବା କରି ॥ ଆଉ ଆଉ ଭିନ୍ନ ଭିନ୍ନ କରଇ ବେଭାର । ତାହାର ଯେ ନିଜ ଦ୍ୱାର ଅତି ମନୋହର ॥ ସେ ଦ୍ୱାର ଟପିଣ କେହି ନ ପାରନ୍ତି ଯାଇ । କୋଟି କୋଟି ବ୍ରହ୍ମା ବିଷ୍ଣୁ ନାଶ ଯାନ୍ତି ତହିଁ । ତେତିଶକୋଟି ଦେବତା ତାଙ୍କ ସେବା କଲେ । ବ୍ରହ୍ମା ବିଷ୍ଣୁ ଶିବ କେହି ଯାଇ ନ ପାରିଲେ ॥ ନିତ୍ୟସ୍ଥଳ ଦେଖିବାକୁ ସମସ୍ତଙ୍କ ମନ ।

ଛତରେ ପଶିତ କେହି ନୋହିଲେ ଭାଜନ ॥ ରାସକୁ ଦେଖିବେ ବୋଲି ଆଶା କରିଥାନ୍ତି । ଲକ୍ଷେ ଦୂର ଅନ୍ତରୁ ସେ ବାହୁଡଣ ଯାନ୍ତି ॥ ରାସମଣ୍ଡଳ ଦ୍ୱାର ଥାଇ ସେହି ଲକ୍ଷ୍ମୀ । ତ୍ରିପୁରାକୁ ଆଉ କେହି ନ ପାରନ୍ତି ବୋଧି ॥ ଯେତେ ବେଳେ ପ୍ରବେଶିବ ପ୍ରେମକଳା ପୁଣ । ସେହିକାଳେ ତ୍ରିପୁରାଙ୍କ ମାଣିକ୍ୟ ପ୍ରମାଣ ॥ ସକଳରେ ପରକାର୍ଯ୍ୟ ଭାବନ୍ତି ତାହାର । ପରମ ରହସ୍ୟସଦନେ ପ୍ରଭୁ ବଂଶୀଧର ॥ ଯେତେବେଳେ ପ୍ରଭୁ ଉଦେ ଉତ୍ତରନଗେଣ । ସହଜେ ନଂଶନନରେ ସୋମବାର ଜାଣ ॥ ପରମରହସ୍ୟରେ ପୁଣ ଶ୍ରୀନନ୍ଦନନ୍ଦନ । ନନ୍ଦସ୍ୱେ କରିବେ ବୋଲି ବାଞ୍ଛା କଲେ ମନ ॥ ମୋହ ନାମରତ୍ନଗୀତା ଅଟଇ ଯେ ସାର । ଦୀନକୃଷ୍ଣ ଦାସ ଏହା କଲେକ ପ୍ରଚାର ॥

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀହରିଅର୍ଜୁନ ସମ୍ବାଦେ ନାମ ସପ୍ତଦଶୋଽଧ୍ୟାୟଃ ।

---

## ଅଷ୍ଟାଦଶ ଅଧ୍ୟାୟ ।

ଅର୍ଜୁନ ଆଗରେ ଯେ କହନ୍ତି ଭଗବାନ । ଶୁଣ ତୁ ହୋ ପାଣ୍ଡୁସୁତ ମୋହର ବଚନ ॥ ଯେବଣ ପ୍ରକାରେ ସେହି ରାସ ନବ୍ୟସ୍ଥଳୀ । ଶୁଣିକରି ତ୍ରିପୁର ଯେ ହୃଦପଦ୍ମେ ଭାଳି ॥ କୃଷ୍ଣ ତାଙ୍କୁ ସେବା ଯେ କଲେକ ମନ ଜାଣି । ତ୍ରିପୁରା ବୋଇଲେ ବର ମାଗ ଚକ୍ରପାଣି ॥ ତ୍ରିପୁରା ବଚନେ କୃଷ୍ଣ ମନେ ମହାତୋଷ । ବୋଇଲେ ମୋତେ ଗୋ ତୁମ୍ଭ ଦେଖାଅ ରାହାସ ॥ କେବଣ ପ୍ରକାରେ ସେ ରାହାସ ନବ୍ୟସ୍ଥଳୀ । ଶୁଣିକରି ତ୍ରିପୁରା ଯେ ହୃଦପଦ୍ମେ ଭାଳି ॥ ତ୍ରିପୁରା ବୋଇଲେ ତୋତେ ଦେଖାଇବି ସତ । ତୋହଯୋଗୁଁ କେତେ ପୁଣି ପଡିବ ଅନର୍ଥ ॥ ଏତେ ବୋଲି ତତ୍ତ୍ୱ ଶୋଧି ମନ୍ତ୍ରେ ବାଳୀ କଲା । ବାଦ୍ୟ ରତ୍ନମାଳ ଆଣି ଶ୍ରୀଅଙ୍ଗେ ଖଞ୍ଜିଲା ॥ ବିବିଧ ପ୍ରକାରେ କଲା ଅପୂର୍ବ କାଛୁଣି । ନବୀନ ଷୋଡଶୀ ରୂପ ପୂର୍ଣ୍ଣଚନ୍ଦ୍ର ଜିଣି ॥ ଗୋପୀମାନଙ୍କର ରୂପ ଯେଉଁ ରୂପେ ସାଜ । ସେହିରୂପେ ତ୍ରିପୁରା କୃଷ୍ଣଙ୍କୁ କଲା ସଜ ॥ ନାନାରତ୍ନ ଖଞ୍ଜିଣ ସୁବେଶ କଲା ବାମା । ଅନେକ ପ୍ରତିମା ବ ଗଢିଲା ବିଶ୍ୱକର୍ମା । ତ୍ରିଭୁବନକୁ ବେଶ କଲା ଜଗନ୍ମାତା । ଚରଣେ ନୂପୁର ଖଞ୍ଜି ଦେଲାକ ଅଳତା ॥ ଚାଲିବାରେ ଶବଦ କରଇ ଝୁମଝୁମ । କଟିତଟେ ଓଢଣୀ ମୁକୁତାର କମ ॥ ନବୀନ କନକ ତାଡ଼ ବେଢିଭୁଜେ ଲାଗେ । ହୀରା ନୀଳା ପଦକ ଖଞ୍ଜିଲା ପୂର୍ବଭାଗେ ॥ ନେତର କାଛୁଣୀ ଉପରେ ମୁକୁତାର ଜାଲି । ପିଠିଅତେ ଖଞ୍ଜିଲା ପାଟର ନବଫୁଲ ॥ କଣ୍ଠରେ ଖଞ୍ଜିଲା ଆଣି ଶତେଶ୍ୱରୀ ହାର । ଅପୂର୍ବ କଜ୍ଜ୍ୱଳ ଦେଲା ବେଢିନୟନର ॥ ସୁନ୍ଦର ଅଳକାବଳୀ ଭାଲପଟେ ଛଟା । ଅର୍ଦ୍ଧଚନ୍ଦ୍ର ପରେ କସ୍ତୁରୀବିନ୍ଦୁ ଶୋଭିତା ॥ ହୀରାଲାଗି କମ ଯେ କର୍ଣ୍ଣରେ ନବ୍ୟକାପ । ବିମ୍ବାଧରେ ଗଞ୍ଜଇ କୋଟିଏ ରବିତାପ ॥ ନାକଚଣା ନାସାରେ ଖଞ୍ଜିଲା ଯତ୍ନକରି । ମୁକୁତାର ଜ୍ୟୋତିବଂ ସୂର୍ଯ୍ୟହିଁ ନୋହେ ସରି ॥ ନାସାର

ଦକ୍ଷିଣଭାଗେ ସୁବର୍ଣ୍ଣର ଫୁଲ । କୋଟିଏ ସୂର୍ଯ୍ୟର ଜ୍ୟୋତି ନୋହେ ସମତୁଲ ॥ ଭ୍ରୂତର କେଶରେ ଯେ ପାରିଲ ଦିବ୍ୟବେଣୀ । ଖୋଷା ଖୋଷିଲା ଯେ ଇଚ୍ଛି ନାମ ନାଗଫେଣି ॥ ସଜକରି ଯେତିଗଲା ଶିଂପୁରା ସୁନ୍ଦରୀ । ଚଉଷଠୀ ସଖୀ ଗୋପୀ ନ ପାରିଲେ ବାରି ॥ ଅନନ୍ତଶିଖରେ ଶୋଭା ପଦ୍ମ ଯେ କେଶର । ତହିଁରେ ପ୍ରବେଶ କଲା ସ୍ତ୍ରୀରତ୍ନସାର ॥ ସପତମଣ୍ଡଳୀ ଯେ ଉପରେ ଦିବ୍ୟବାସ । ନିତ୍ୟସ୍ଥଳ ରାସରେ କୃଷ୍ଣ ଏକ ପୁରୁଷ । ଅଙ୍ଗେ ଅଙ୍ଗେ ପ୍ରତିଭେଦେ ଏକ ଅଙ୍ଗ ସାଜେ । କମଳକେଶର ମଧ୍ୟେ କରିଛନ୍ତି ବିଜେ ॥ ଶ୍ରୀକୃଷ୍ଣର ଶ୍ରୀଭୁଜ ରାଧିକା ଅଙ୍ଗେ ଅଛି । ରାଧିକାର ଶ୍ରୀଭୁଜ ଶ୍ରୀକୃଷ୍ଣ ଦେହେ ଶୋଭା । ଅଙ୍ଗ ପ୍ରତିଭେଦେ ଯେ ମୁଖକୁ ମୁଖ ଦେଇ । ପ୍ରେମ ଆଲିଙ୍ଗନେ ବାମଜାନୁରେ ବସାଇ ॥ କୋଟିଚନ୍ଦ୍ର ଲକ୍ଷ ନୋହେ ଶ୍ରୀଭୁଜର କାନ୍ତି । ରାଧିକାର ଅଙ୍ଗ ତହିଁ ହେମଲତା ପ୍ରାୟ ॥ କୃଷ୍ଣ ଫୁଙ୍କନ୍ତି ଶ୍ରବଣ ପୁଲକିତ ରାଧା । ଦୁହିଙ୍କର ପ୍ରେମରସ ମୁଖରେ ଶରଧା ॥ ରତ୍ନବେଦୀ ଦ୍ୱିଦଳ ଷଡ଼ଦଳ ମୂଳ । ଅଷ୍ଟଦଳେ ଅଷ୍ଟକନ୍ୟା ଆଉମାନେ ଭୁଲ ॥ ଷୋଳଦଳ ପର୍ଯ୍ୟନ୍ତ ବତିଶ ଭାବେ ଖେଳା । ରାଧା କୃଷ୍ଣ ଘାରିଛି ଚୌଷଠି ରସକଳା ॥ ଯନ୍ତ୍ର ତାଳ ବେଣୁ ନାଦ ଦିବ୍ୟ ଅଜ ବେଣୀ । ମୃଦଙ୍ଗ ଧରଣ ପାଦକେ ଦଶ ତରୁଣୀ ॥ ଯେତେବେଳେ ପରମ ନିତ୍ୟରେ ପ୍ରଭୁ ଥିବେ । ପରମ ଯେ ଖେଳ ପୂର୍ଣ୍ଣ ଅବଶ୍ୟ କରିବେ ॥ ଶ୍ରୀପଦ୍ମର ନାମେ ଜାତ ସୁନ୍ଦର କୁମାରୀ । ତାହାଙ୍କ ଦରତେ ବଶ ପ୍ରଭୁ ବଂଶୀଧାରୀ ॥ ଶୁକମୁନି ଅବସାନ ହେବ ଯେ କାଳର । ବୈଦ୍ୟରୂପରେ ଜନମ ହୋଇବ ଭକର ॥ ତେଣୁ ତୋଷମନ ମୁଁ ଯେ ହୋଇବ ଭକର । ଏକାକ୍ଷର ପ୍ରଣବ ଯେ କରିବଇଁ ସାର ॥ ଏଥୁ ନାମରତ୍ନଗୀତା ଅମୀୟ ଯେ ରସ । ଦୀନକୃଷ୍ଣ ଦାସ ଯେ ଭାବରେ ପରକାଶ ॥

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀହରିଅର୍ଜ୍ଜୁନ ସମ୍ବାଦେ ନାମ
ଅଷ୍ଟମଂଶୋଽଧ୍ୟାୟଃ ।

---

## ଊନବିଂଶଅଧ୍ୟାୟ ।

ଅର୍ଜ୍ଜୁନ କେଭାରେ ଯେ ଅଟଇ ପାଣ୍ଡୁସୁତ । ଶ୍ରୀକୃଷ୍ଣ କହନ୍ତି ଶୁଣ ଏବେ ବୀର ପାର୍ଥ । ଯେ ଯାହାର ଦଣ୍ଡପାଦେ କରୁଛନ୍ତି ସେବା । ବିବିଧବାଦ୍ୟର ସ୍ୱର କେତେ କହିଦେବା ॥ ଏମନ୍ତ ସମୟେ ତୁ ହେ ଶୁଣ ଫାଲଗୁନି । ଶିପୁରା ଚଳିଲା ଯେ ଦଣ୍ଡୁକୁ ସଙ୍ଗେ ଘେନି ॥ ଗୋପୀବୃନ୍ଦ ସଙ୍ଗରେ ମିଶାଇ ଦେଲେ କ୍ଷଣେ । ଅଢ଼ ହୋଇ ଆପଣେ ରହିଲେ ଖଣ୍ଡଦୂରେ ॥ ଗୋପୀଙ୍କି ବୋଇଲେ ଅମ୍ଭେ ଦ୍ୱିଷ କହି ଦେବା । ମନ ଜାଣି କରୁଥାଅ ପ୍ରଭୁଙ୍କର ସେବା ॥ କେହି ନାହିଁ ନ ତୁହିବ ନୃତ୍ୟ ଗୀତଠାରେ । ତତ୍ତ୍ୱବୁଦ୍ଧି ନ ଟଳଇ ଯେମନ୍ତ ପ୍ରକାରେ । ଯେତେକ ଯୁବତୀ ସେ ରାଧିକା ଅଙ୍ଗୀକୃତ । ସମସ୍ତେହେଁ ଜାଣନ୍ତି ସେବାର ବିଧିମତ ॥ ତାଳ ରବା

ମର୍ଦ୍ଦଳ-ଯେ ଯନ୍ତ୍ରର ବାଜେଣି । କେ ଚାମର ଢାଳଇ କେ ଧରଇ ଦର୍ପଣୀ ॥ କେଉଁ ଗୋପୀ ଶିରେ ଛତ୍ର ଧରିଛନ୍ତି ତୋଳି । ପଙ୍ଖା ଧରି ବିଞ୍ଚଇ କେବଣ ଦିବ୍ୟବାଳୀ ॥ ତୃତ୍ତପ ଧରିଣ କେ ତାମ୍ବୁଳ କରେ ଲଗି । ରାଧାକୃଷ୍ଣ ସେବାରେ ସମସ୍ତେ ଅନୁ-ରାଗୀ ॥ କେବଣ ନାୟିକା ପୁଷ୍ପ ଖଞ୍ଜେ ନାନାବର୍ଣ୍ଣ । କେଉଁ ଗୋପୀ ଶ୍ରୀଅଙ୍ଗରେ ଲେପନ୍ତି ଚନ୍ଦନ ॥ କର୍ପୂର କସ୍ତୁରୀ ଗନ୍ଧ କେଉଁ ଗୋପୀ ଖଟି । ଚୂଳ ମାଳ ବିନାଯ୍ୟ କେ ଖଞ୍ଜଇ କାଛିଟି ॥ କେବଣ ନାୟିକା ଅଙ୍ଗୁରିମୁଦ୍ରୀ ଧରି । ପ୍ରଭୁଙ୍କ ଶ୍ରୀପଦ୍ମକର ଅଙ୍ଗୁଷ୍ଠିରେ ଭରି ॥ ବେଳପାଦେ ନୂପୁର କେ ଦେଇ ମନ ରଞ୍ଜେ । କେଉଁ ଗୋପୀ କଟିତଟେ ଓଢଣୀ ଖଞ୍ଜେ । ନିରନ୍ତରେ ପ୍ରଭୁଙ୍କର କରୁଛନ୍ତି ସେବା । ନିତ୍ୟସ୍ଥଳେ ନାୟିକା ସମସ୍ତେ ନବଯୁବା ॥ ରାଧିକାର ଅଙ୍ଗରୁ ଅଟନ୍ତି ପ୍ରକଟ । କୋଟି ବ୍ରହ୍ମାଣ୍ଡରେ ଆଉ ନାହିଁ ତାଙ୍କୁ ଲକ୍ଷ ॥ ଏଥିଅନନ୍ତରେ ଶୁ ହୋ ଶୁଣ ପାଣ୍ଡୁସୁତ । ପ୍ରଭୁଙ୍କ ସେବାରେ ଗୋପୀ ଦେଇଛନ୍ତି ଚିତ୍ତ ॥ ବିପୁରା ଯେ ମାନବବସ୍ତ୍ରୁଙ୍କ ଯେଲଗଲା । ନୃତ୍ୟ ରଙ୍ଗ କର ବୋଲି ମିଶାଇଣ ଦେଲା ॥ ସେ ଗୋପୀମାନଙ୍କ ବେଶ ଚାହିଁବାର ଠାଣି । କହିବାର ଛଟକ ଯେ କେ ପାରିବ ଭଣି । ବଚନ ମଧୁର ପୁଣି ଅତ୍ୟନ୍ତସୁଲଭ । ଗାଇବା ବାଇବା କଥା ଦେବଙ୍କୁ ଦୁର୍ଲ୍ଲଭ ॥ ତହିଁ ସଙ୍ଗେ ବିଷ୍ଣୁ ଯେ ପଶିଲେ ନୃତ୍ୟ କରି । ଭିନ୍ନ ଭିନ୍ନ ମୂର୍ତ୍ତି ହୋଇ ଦିଶିଲାକ ବାରି ॥ ମନ ଛନ୍ନ ଛନ୍ନ ନ ଜାଣିଲେ ସେବା ରୀତି । ଚଞ୍ଚଳ ପ୍ରକୃତି ହୃଦପଦ୍ମେ କଲେ ସ୍ଥିତି ॥ ଚାଲିବାର ଠାଣି ଯେ ହୁଅଇ ଆନ ଆନ । ଥରହର ହୋଇଣ କମ୍ପିଲା ବେନିଜାନୁ ॥ ଲୋଚନ ଯେ ସ୍ଥିର ନୋହିଲାକ ନୃତ୍ୟରସେ । ଛନ୍ନ ଛନ୍ନ ହୋଇଣ ଚାହିଁଲେ ଚଉପାଶେ ॥ ବାଇବାର ଭଙ୍ଗି ଯେ ନୋହିଲା ବିଚ୍ଛୁ ଭାବ । ଗାଇବାର ସ୍ୱର କରି ନ ପାରିଲେ ଠାବ ॥ ଚାହିଁବାର ଛଟକ ଯେଉଁ ସଙ୍ଗତ ହେଲା । ଅଙ୍ଗ ଉପାଙ୍ଗ ମହିମା ଶୋଭି ନ ପାଇଲା ॥ ନିତ୍ୟସ୍ଥଳ ସୁନ୍ଦରୀ ଚାହିଁଲେ ବିସ୍ମିତ । ବିଷ୍ଣୁରେ ବୋଇଲେ ତୁ କାହିଁ ଅଇଲୁ ଏଥ ॥ ଚତୁର୍ଭୁଜ ଗୋଷ୍ଠା ତୋର ଚଞ୍ଚଳ ସ୍ୱଭାବେ । କେମନ୍ତ ପ୍ରକାରେ ଅସି ମିଳିଲୁ ଏଠାବେ ॥ ରାଧିକାର ଅଙ୍ଗ ଯେ ତୋ ତହିଁ ନାହିଁ ବିଚ୍ଛୁ । ଗୋପୀଙ୍କର କଳା ତୋର କେଉଁ-ଠାରେ ଅଛୁ ॥ ନିତ୍ୟସ୍ଥଳ ବିଧି ଯେ ନ ଜାଣ ମାତ୍ର ଲେଶ । କେତେ ପୁଣ୍ୟ କରି ଅସି ଦେଖିଲ ବିହାସ ॥ ବ୍ରହ୍ମାଦି ଶଙ୍କର ଇନ୍ଦ୍ର ଦିବାକର ମୂଳେ । କେହି ପଶି ନ ପାରନ୍ତି ଏ ରାହାସ ସ୍ଥଳେ ॥ ଅଶେଷ ବ୍ରହ୍ମାଣ୍ଡେ ଯେତେ ଲୋକ ଛନ୍ତି ରହି । ଗୋପୀଙ୍କର ଜନ୍ମ କେହି ନ ପାରନ୍ତି କହି ॥ ସବୁ କର୍ମ ସବୁ ଧର୍ମ ନ ପାରନ୍ତି ସାଧି । କେହି ଦେଇ ନ ପାରଇ ନିତ୍ୟସ୍ଥଳ ବିଧି ॥ ତୁ ଏବେ କେବଣ ଭାଗ୍ୟ କରିଥିଲୁ ପୂର୍ବେ । ତେଣୁକରି ବିହାସ ଦେଖିଲୁ ତୁହି ଏବେ ॥ ଗୋପୀମାନେ ଏମନ୍ତ ବିଷ୍ଣୁର ଯତ୍ନ କରି । ଧ୍ୟାନରେ ଜାଣିଲେ ତାହା ନିତ୍ୟାକାର ହରି ॥ ବିଷ୍ଣୁରାକୁ ଚାହିଁ ଆଜ୍ଞା ଦେଲେ ତୋପରବର୍ତ୍ତେ । ତୋହିଛର ପାମର ଲୋ କସ୍ତ

ଦେଲୁ ମୋତେ ॥ ଗୋପୀଙ୍କ ଉପରେ ତୋତେ ପଣ ଦେଲୁଁ ଯତ୍ନେ । ମୁହୂଅଙ୍ଗ ହସ୍ତ କଲା ଅଣିଲୁ ତୁ ତାହୁଁ ॥ ଅଯୋଗ୍ୟ ଯୁବତୀ ଆଉ ବୋଲବାକୁ ତାହା । ମାନବହସ୍ତଙ୍କୁ ଅଣି ଦେଖାଇଲୁ ଏହା ॥ ଆମ୍ଭଙ୍କୁ ଯେ ମାୟା କଲୁ ଛତ୍ୟସ୍ଥଳ ସ୍ଥାନେ । ଅର୍ଜିଲର ଫଳ ତୁ ଭୁଞ୍ଜିବୁ ବହୁଦିନେ ॥ ଯେଉଁକାଳେ ଆମ୍ଭେ ହେବୁଁ ଶ୍ରୀମତୀରମଣ । ତୋର ନାମ ମାଣିକ୍ୟ ବୋଲଣ ହେବ ଜାଣ ॥ ମୋର ନାମରତ୍ନ-ଗୀତା ଅଟେ ରସସାର । ଦୀନକୃଷ୍ଣ ଦାସ କଲା ସ୍ତବରେ ପ୍ରଚାର ॥

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀହରିଅର୍ଜୁନ ସମ୍ବାଦେ ନାମ
ଊନବିଂଶୋଽଧ୍ୟାୟଃ ।

---

## ବିଂଶ ଅଧ୍ୟାୟ ।

ଅର୍ଜୁନ ଆଗରେ ଯେ କହନ୍ତି ହୃଷୀକେଶ । ଏକମନେ ଶୁଣ ତୁହ ଅହେ ପାଣ୍ଡୁଶିଷ୍ୟ ॥ ମାନବହସ୍ତଙ୍କୁ ଏଥୁଁ ଯାଅ ବେଗେ ଘେନି । ମର୍ତ୍ତ୍ୟ ମଣ୍ଡଳରେ ତୁମ୍ଭେ ଜାତହୁଅ ବେନି ॥ ଛତ୍ୟକାର କରନେ ବିପୁରା ହୃଦୟ ପାଇ । ଓହାଡେ ଥାଇଣ କରପଦ୍ମ ଯୋଡି କହ ॥ ପୁଣି ଉଠିକରି ବାମା ଶିରେ ଦେଲା ହାତ । ବୋଇଲା ଅପ୍ରାଧ ମୋର କ୍ଷମାକର ନାଥ ॥ ସଙ୍ଗଦୋଷ ପ୍ରଭୁ ବାଧା ଲାଗିବନ୍ତି ମୋତେ । ଏ ମହାପାପକୁ ପାରି ହୋଇବି କେମନ୍ତେ ॥ ବୋଲିଥିଲ ଗୋଲୋକ ସଙ୍ଗରେ ତୁହ ଥିବୁ । ଛତ୍ୟସ୍ଥଳ ଛାଡି ଆଉ କେଉଁଠି ନ ଯିବୁ ॥ ଯେଣୁକରି ମହାପ୍ରଭୁ କହୁଛନ୍ତି ଏତେ । ରାହାସ ଦ୍ୱାରରେ ଦ୍ୱାରୀ କରିଥିଲ ମୋତେ ॥ ମହାପାପ ଅର୍ଜିଲି କର୍ମରେ ଅଛୁ ବଶ । ନ ଜାଣି ଅପ୍ରାଧ କଲି ନ ଧରିବା ଦୋଷ ॥ ବିପୁଗ୍ ବାକ୍ୟ ଯତ୍ନେ ଶୁଣିଲେ ଛତ୍ୟକାର । ରାଧା ମୁଖ ଚାହିଁଣ ବୋଇଲେ ଚକ୍ରଧର ॥ ବିପୁଗ୍କୁ ସର୍ବଦା ଦ୍ୱାର ଯେ ଅଛୁ ଦେଇ । ମାନବହସ୍ତଙ୍କୁ ଏଥେ ଆଣିଲାକ ସେହୁ ॥ ତେଣୁକରି ଆମ୍ଭ ଚିତ୍ତେ ଉପୁଜିଲା କୋପ । ମର୍ତ୍ତ୍ୟରେ ଜନମ ହୋଇ ଭୁଞ୍ଜିବେ ସେ ପାପ ॥ ଚହିଁକି କାରଣ ଏବେ କି କରିବ ତୁମ୍ଭେ । ତୁମ୍ଭ ବୋଲ ନାସ୍ତି କରି ନ ପାରୁଁ ଯେ ଆମ୍ଭେ ॥ ରାଧିକା ବୋଇଲେ ତୁମ୍ଭ ବଚନହିଁ ହେଉ । ଏ ଚରଣେ ଥାଉ ପଛେ ଅଙ୍ଗ ତାର ଯାଉ ॥ ତୁମ୍ଭଠାରେ ସେବା ତାର ଯେଉଁ ହଗୁଆସ । ମର୍ତ୍ତ୍ୟ ଭୁବନକୁ ତାର ଯାଉ ଅର୍ଦ୍ଧଅଂଶ ॥ ବିପୁସ୍କୁ ଚହିଁ ଆଜ୍ଞା ଦେଲେ ଠାକୁରାଣୀ । ତୋହ ଅଂଶେ ଯେତେ ଗୋପୀମାନେ ଥିଲେ ପୁଣି ॥ ତୋହର ସଙ୍ଗତେ ସେ ସମସ୍ତେ ଚଳିଯାନ୍ତୁ । ପୁଣ୍ୟରୂପ ଧରି ଏବେ ପୂଜା ପାଉଥିବୁ । ଆମ୍ଭେ ମଧ୍ୟ ବହୁଦିନ ଯିବୁଁ ମର୍ତ୍ତ୍ୟଲାଗ । ତେଣୁକରି ତୋତେ ଆମ୍ଭେ ଦେଉଅଛୁଁ ଆଗ ॥ ତୁ ଯେବେ ଜନମ ଯାଇ ହୋଇବୁ ଛତ୍ୟ । ମର୍ତ୍ତ୍ୟପୁର ଲୋକଙ୍କର ପାପ ଯିବ କ୍ଷୟ ॥ ତୋତେ ଯେଉଁମାନେ କରିବେକି ଚହିଁ ସେବା । ମୋତେ ସେମାନେ ହ ଦେଖ ନ ପାଇବେ ଅବା ॥ ଗୋପୀଙ୍କର ଅଙ୍ଗ ସେଇ ଏପୁରେ ନ ଥାଅ ।

ମାନବ ଦଣ୍ଡ୍ଙ୍କୁ ଯେଉଁ ସଙ୍ଗେ ତୋର ଯାଅ ॥ ତୋତେ ଏ ଯେ ଅନ୍ଧା କସ୍ତଇଲ ବାସୁଦେବ । ତୋହର ପାପରେ ଏ ପାଷାଣ ହୋଇଥିବ ॥ ଆମ୍ଭେ ତୋତେ ବର ଦେଉଅଛୁଁ ଶୁଦ୍ଧଭାବେ । ଏହା ମଥା ଉପରେ ତୁ ବସୁଥିବୁ ଅନ୍ତେ ॥ ବିପ୍ରସ୍ତ୍ରୀ ବୋଇଲେ ପ୍ରଭୁ ଯେଉଁ ମୋର ସେବା । ଏଥିର ସନ୍ଦେଶ ମୋତେ ଫେଡି କହିଦେବା ॥ ସ୍ୱାମୀ ବୋଇଲେ ତୁ ଯେ ହୋଇବୁ ତୁଳସୀ । ତେଣୁ କରି ଶ୍ରୀକୃଷ୍ଣ ମଥାରେ ଥିବୁ ବସି ॥ ତୋତେ ସେ ଯେ ଅପ୍ରାଧ ଅର୍ଜିଲ ଦୈତ୍ୟମାନେ । ତେଣୁକରି ମଥାରେ ବସିବୁ ସବୁଦିନେ ॥ ଯେତେବେଳେ ଏଠାରେ ସେ ପ୍ରବେଶ ହୋଇଲା । ଦଣ୍ଡକ ଭିତରେ ଦଶସହସ୍ର ଯୁଗ ଗଲା ॥ ସ୍ୱାଧିକୃଷ୍ଣ ବଚନ ବିପ୍ରରା କର୍ଣ୍ଣେ ଶୁଣି । ଅତ୍ୟସ୍ଥଳ ଛାଡ଼ି ରୂପ ଛାଡ଼ିଲା ତରୁଣୀ ॥ ଦ୍ୱାରେଣ ଥୋଇଲେ ସେ ଯେ ଅଜରୂପ ବେଶ । ଅଂଶ ଯେଉଁ ହଜେ କଲା ଶୁଣ ପାଣ୍ଡୁ ଶିଷ୍ୟ । ଏଥୁଅନନ୍ତରେ ତୁ ହୋ ଶୁଣ ଫାଲଗୁଣୀ । ବିଶାଖାରେ ମିଳିଲା ଯେ ବିପ୍ରସ୍ତ୍ରୀ କାମିନୀ ॥ ମାନବଦଣ୍ଡ୍ଙ୍କୁ ଯେଉଁ ପାଉଅଛୁ ଶୋଭା । ଇନ୍ଦ୍ରଦଳ ଛାଡ଼ି ଆସି ଷଡ଼ଦଳେ ଉଭା । ଷଡ଼ଦଳ ଛାଡ଼ି ସେ ଯେ ଷୋଳଦଳେ ପଶି । ତହୁଁ ପୁଣ ବତିଶଦଳରେ ମିଶେ ଆସି ॥ ବତିଶକୁ ଛାଡ଼ି ଉତ୍ଷଠୀରେ ପ୍ରବେଶ । ଅନ୍ୟ ଗୋପୀ ଯେତେକ ଯେଉଁଲ ତାଙ୍କ ଅଂଶ ॥ ବାସନା ଯେଉଁ ସେ ତହୁଁ ଅଇଲାକ ବାଲୀ । ଗୃହଦ୍ୱାର ଗୃହଘାଟ ଅଇଲା ଅନ୍ଧଳି ॥ ପୂର୍ବ ସରୋବର ଶିଖେ ଶିଖାଦଳ ସଙ୍ଗେ । ତହୁଁ ଆସି ପ୍ରବେଶ ହୋଇଲା ଅତିବେଗେ ॥ ଶାଖାଦଳ ମଧ୍ୟମା ଦ୍ୱାଦଶଦଳ ସ୍ଥାନ । ସବୁଠାରେ ଭ୍ରମିଣ ହରଷ ତାଙ୍କ ମନ ॥ ଗୋପୀ ଗୋପାଳଙ୍କ ଭୁବନରେ ଯାଇ ପଶି । ତହୁଁ ପୁଣି କାଳନ୍ଦୀଜଳରେ ଆସି ମିଶି ॥ କାଳିନ୍ଦୀଜଳରେ ସେ ଯେ ଦଣ୍ଡ ନାମେ ଭୂମି । ଅନନ୍ତ ମୁଖରୁ ଖସି ବୈକୁଣ୍ଠେ ବଶାମି ॥ ତହୁଁ ପୁଣ ଆସି ଯେ ଗରୁଡ଼ପୁରେ ପଶି । ଦେବତରୁ ଛାଡ଼ି ଆସି ପ୍ରବୃତରେ ମିଶି ॥ ପ୍ରବୃତ୍ତି ଛାଡ଼ି ଯାଇ ବିକୁଣ୍ଠରେ ଝୁଲି । ସହସ୍ର ଶାଖାରେ ଆସି ମିଳିଲାକ ବାଲୀ ॥ ସହସ୍ରେ ମୂରତି ବେଶ ଧରି ଦିବ୍ୟ ଶୋଭା । ଦଶଦ୍ୱାରେ ଦଶରୂପ ଧରି ହୋଏ ଉଭା ॥ ବ୍ରହ୍ମାଣ୍ଡ ହାଣ୍ଡିରେ ଆସି ବିକୁଣ୍ଠରେ ଝୁଲି । ଦଶଦ୍ୱାରୁ ଆସି ଶୁଷୁମ୍ନା ଦ୍ୱାରେ ମିଳି ॥ ତହୁଁ ପୁଣି ମିଳିଲି ସୁଜନ ନନ୍ଦୀ ପାଶ । ନନ୍ଦୀ ଶିଖେ ରତ୍ନଦ୍ୱୀପେ ଶୃଙ୍ଗରେ ପ୍ରବେଶ ॥ ଶୃଙ୍ଗରୁ ଖସିଣ ପୁଣ ବ୍ରହ୍ମାଣ୍ଡରେ ପଶି । ଗୋଲକ ତଳେରେ ଦେବଲୋକେ ଆସି ମିଶି ॥ ତହୁଁ ପୁଣି ଖସି ଇନ୍ଦ୍ରଭୁବନେ ପ୍ରବେଶ । ଯେତେସ୍ଥାନେ ନାନାରୂପେ ଯେଉଁଲା ସେ ବେଶ ॥ ଅଗ୍ନି ଯେ ପବନ ତ୍ରଇଲୋକ୍ୟ ଇନ୍ଦ୍ର ହୁଇ । ତହିଁରୁ ଖସିଣ ସୂର୍ଯ୍ୟଲୋକେ ଆସି ହୋଇ ॥ ସୂର୍ଯ୍ୟଲୋକ ଛାଡ଼ିଣ ଯେ ଯମଦ୍ୱାରେ ପଶି । ତହୁଁ ପୁଣ ମର୍ତ୍ତ୍ୟପୁରେ ଜନମିଲେ ଆସି ॥ ମାନବଦଣ୍ଡ୍ଙ୍କ ଯେଉଁ ମନରେ ହରଷ । ସର୍ବ ଶୁଦ୍ଧଯୋଗେ

ଆସି ହୋଇଲେ ପ୍ରବେଶ ॥ ସୁଧାକୃଷ୍ଣ ଶାପ ତାଙ୍କୁ ପ୍ରବେଶ ହୋଇଲା । ଦୀନକୃଷ୍ଣ ଦାସ ଏହା ଗୀତରେ କହିଲା ।

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀ ହରିଅର୍ଜ୍ଜୁନ ସମ୍ବାଦେ ନାମ
ବିଂଶୋଽଧ୍ୟାୟଃ ।

---

## ଏକବିଂଶ ଅଧ୍ୟାୟ ।

ଶ୍ରୀହରି ବୋଇଲେ ଶୁ ହେ ଶୁଣ ବୀର ପାର୍ଥ । କୃଷ୍ଣଙ୍କୁ ଘେନି ତ୍ରିପୁରା ମଣ୍ଡପରେ ଜାତ ॥ ତ୍ରିଲୋକ ହରି ଯେ କଲେ ରକ୍ଷିଲବେ । ଦନୁଜକୁଳରେ ଆମ୍ଭେ ଜନମିବା ଯେବେ ॥ ଦେବତାମାନଙ୍କର ଖଣ୍ଡିବା ସବୁ ସୁଖ । ତାଙ୍କ ହସ୍ତେ ମଲେ ସିନା ଯିବ ଅମ୍ଭ ଦୁଃଖ ॥ ଏମନ୍ତ ବୋଲିଣ ସେ ଜନମ ହେଲେ ଯହିଁ । ଦୈତ୍ୟରୂପେ ଦୈତ୍ୟକୁଳେ ଜନମିଲେ ତହିଁ ॥ ମଧୁଦୈତ୍ୟ କୁଳକୁ ସେ କୃଷ୍ଣ ଦୂତ ଗଲା । ମଧୁଦୈତ୍ୟ ବୋଲି ତହିଁ ପୁତ୍ରେକ ହୋଇଲା ॥ କୃଷ୍ଣ ଅଂଶ ହୋଇ ସେ ଯେ ହୋଇଲା ଜନମ । ଷଡ଼୍‌ରିପୁଣେ ପୃଥିବୀରେ ନାହିଁ ତାଙ୍କୁ ସମ ॥ ବୃନ୍ଦାସୁର ବୋଲି ଏକ ନାମେଣ ଦଇତ୍ୟ । ତାହା କୁଳେ ତ୍ରିପୁରା ଯେ ହୋଇଲେକ ଜାତ ॥ ବୃନ୍ଦାସୁର ଦଇତ୍ୟ ଯେ ତ୍ରିପୁରାସୁନ୍ଦରୀ । ବୃନ୍ଦାବତୀ ନାମ ସେ ବହିଲା ତେଣୁ କରି ॥ ବହୁ ଦିନେ ସେ କନ୍ୟା ହୋଇଲା ନବଯୁବା । ସୁନ୍ଦରପଣରେ ଦଶ ଦିଗାନ୍ତର ଶୋଭା ॥ ପୃଥିବୀ ଭିତରେ ତାଙ୍କୁ ନ ମିଳିଲା ବର । ତେଣୁକରି ପିତା ତାର କଲା ସ୍ୱୟମ୍ବର ॥ ସୁର ଯେ ଅସୁର ମଧ୍ୟେ ନୃପତି ମିଳିଲେ । ସେ କନ୍ୟାକୁ ବରପଣେ କେହି ଯେ ନୋହିଲେ ॥ ହରି ବୋଇଲେ ଏହା କେ କରିବ ଭୋଗ । କୃଷ୍ଣ ବିନା ଏ କନ୍ୟାକୁ ଆନ ନୁହେ ଯୋଗ୍ୟ । ରାଜାଗଣମାନଙ୍କର ଶୁଣିଣ ବଚନ । କୋପେଣ ଉଠିଲା ମଧୁଦୈତ୍ୟର ନନ୍ଦନ ॥ ବୃନ୍ଦାବତୀ ନିକଟକୁ ବେଗ ହୋଇ ଗଲା । ବେଗକର ଧରି ତହିଁ ରଥେ ବସାଇଲା ॥ ଦେଖି କରି ଆଶ୍ଚର୍ଯ୍ୟ ହୋଇଲେ ଦେବଗଣ । ଆଗରେ ଭଗାଳି ଯାଇଁ କଲେ ମହାରଣ ॥ ନାନାଶସ୍ତ୍ର ଘେନିଣ ସେ ଯୁଦ୍ଧ କଲେ ଭଲ । ଏକା ସେ ସବୁଙ୍କୁ ଜିଣି କନ୍ୟା ଘେନିଗଲା ॥ ଆପଣା ମନ୍ଦିରେ ନେଇ କଲା ତାଙ୍କୁ ହୋଇ । ପୃଥିବୀ ଭିତରେ ତାଙ୍କୁ ସରିସମ ନାହିଁ ॥ ଯେଉଁ ଦିନୁ ବୃନ୍ଦାବତୀ ହୋଇଲା ସେ ବଶ । ବେଳୁ ବେଳ ତେଜ ତାର ବଢ଼ିଲାକ ଶୋଭା ॥ ଯେଉଁ ଶାପ ଦେଇଥିଲେ ଭକ୍ତକାରି ହରି । ସୁଧାକୃଷ୍ଣ ବଚନ କେ ପାରେ ଆନ କରି ॥ ତ୍ରିପୁରାକୁ ଶାପ ସେ ଯେ ଅନ୍ୟଥା ନୋହିଲା । ମାନବା କୃଷ୍ଣର ଆସି ଭାରିଯା ହୋଇଲା ॥ ଅପୂର୍ବ ସୁନ୍ଦରୀ ସେ ଯେ ବୃନ୍ଦାବତୀ ନାରୀ । ରୁକ୍ମିଣୀ ଯେ ରମ୍ଭା ତାଙ୍କୁ ନୋହେ ସମସରି ॥ ପତିରେ ଭକତା ସେ ହୋଇଲା ଦିବ୍ୟ ବାମା । ସତ୍ୟବ୍ରତ ପାଳିଲା ସେ ବୃନ୍ଦାସୁର ଜେମା ॥ ନିଷ୍ଠା କରି ସୁନ୍ଦରୀ ପାଳିଲା ସତ୍ୟବ୍ରତ । ତାହା ହେତୁ ଦାନବ ଯେ ଜିଣିଲା ଜଗତ ॥ ଯମ ଦିବାକର ଅଗ୍ନି ପବନ ସହିତେ ।

ସବୁଙ୍କୁ ସଂଗ୍ରାମେ ଜିଣି ବସାଇଲା ରଥେ ॥ ବିଷ୍ଣୁଙ୍କ ସହିତେ ଜିଣି ନେଲା ମହାବୀର । ବ୍ରହ୍ମାଙ୍କ ସହିତେ ଯେ ତେତିଶକୋଟି ସୁର ॥ ଚରଣ ପ୍ରାୟୁକ କରି ସବୁଙ୍କୁ ମଣିଲା । ବିଷ୍ଣୁ ଅଂଶୁ ଜାତ ହୋଇ ବିଷ୍ଣୁଙ୍କୁ ଜିଣିଲା ॥ ଏକା ରଥେ ସବୁଙ୍କୁ ସେ ବସାଇଲା ଧରି । ସମୁଦ୍ରକୂଳରେ ସେ ଯେ ପାଚନାଏ କରି ॥ ଅପଣାର କରି ସେ ରଚିଲା ମାହାପୁର । ମୁକ୍ତପାଇ ସମସ୍ତେ ସେ ନ ଗଲେ ଯେ ଘର ॥ ସାନ ମାରି ବଡ଼ଯାକ ସବୁଙ୍କୁ ସେ ଯାକି । ପତ୍ତନରେ କେହି ଆଉ ନ ଯାନ୍ତି କେଣିକି ॥ ପାଚନା ଭିତରେ ପଶି ସମସ୍ତେହେଁ ଥାନ୍ତି । ପ୍ରାଣରେ ମାରିବ ବୋଲି କେଣିକି ନ ଯାନ୍ତି ॥ କଇଲାଶ ପୁରକୁ ନ ଗଲା ଏକା ସେହି । ଏକାଏ ସାଧିଲା ବୀର ନବଖଣ୍ଡ ମହୀ ॥ ଯେତେ-ବେଳେ ଶ୍ରୀମତୀରମଣ ହେବେ ଜନ୍ମ । ସେ କାଳର କଥା ତୁ ହୋ ଜାଣିଥାଅ ପୁଣ ॥ ଉତ୍ତମଶ୍ଳୋକ ଅଟଇ ଯେଣୁ ଆମ୍ଭ ନାମ । ବଉଦ୍ଧରୂପରେ ଆମ୍ଭେ ହୋଇବୁଁ ଯେ ଜନ୍ମ ॥ ମୋହ ନାମରତ୍ନ ଏ ଅମୃତରସ ସାର । ଦୀନକୃଷ୍ଣ ଦାସ ଏହା ହୃଦରେ ଧରିର ।

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀ ହରିଅର୍ଜୁନ ସମ୍ବାଦେ ନାମ
ଏକତ୍ରିଂଶୋଽଧ୍ୟାୟଃ ।

---

## ଦ୍ୱାତ୍ରିଂଶ ଅଧ୍ୟାୟ ।

ଅର୍ଜୁନ ଆଗରେ ଯେ କହନ୍ତି ଦେବଗାହୀ । ଏକମନେ ଶୁଣ ତୁମ୍ଭେ ପଣ୍ଡୁର ତନୟି ॥ କଇଲାଶ ସ୍ଥାନ ତାହା ମନେ ନ ପଡ଼ିଲା । ତେଣୁକରି ମହାଦେବଙ୍କୁ ସେ ଛାଡ଼ିଗଲା ॥ ମନ୍ତ୍ରୀକି ହକାରି ଦିନେ ପଚାରିଲା ସ୍ୱୟଂ । ସ୍ୱର୍ଗ ମର୍ତ୍ତ୍ୟ ବୈକୁଣ୍ଠପୁର କଲି ସବୁ ଜୟ ॥ ସାମରଥ ପଣେ ମୋତେ କେ ପାରିବ ଜିଣି । ପାଚନା ବସାଇ ବ୍ରହ୍ମା ବିଷ୍ଣୁ କଲି ବନ୍ଦି ॥ ପଦ୍ମୀକି ଦେଖିଲେ ମୋର ନ ରହଇ ଦେହ । ଆଉ ଅଜୟ କେ ଅଛି ତାହା ମୋତେ କହ ॥ ରାଜାର ବଚନେ ମନ୍ତ୍ରୀ କହୁଅଛି ବଳି । ସବୁଙ୍କୁ ଜିଣିଲୁ ଏକା ଈଶ୍ୱରଙ୍କୁ ଛାଡ଼ି ॥ ସେମହା ଦେବଙ୍କୁ ଯାଜା ପାରିଲେ ଯେ ମାରି । ତ୍ରିଭୁବନେ ଆଉ ତୋତେ ନାହିଁ ସରି ॥ ନୃପତି ବୋଇଲା ମୁଁ ଯେ ପଚାରୁଛି ତୋତେ । କାହିଁ ଅଛି ଈଶ୍ୱର ଯେ କହିଦିଅ ମୋତେ ॥ ହାତୀ ଘୋଡ଼ା ସୈନ୍ୟ ବଳ କର ଏବେ ସଜ । ନିଶ୍ଚୟ ଈଶ୍ୱର ମୁଣ୍ଡ କାଟିବି ମୁଁ ଆଜ ॥ ମନ୍ତ୍ରୀ ବୋଲେ କହିଲେ ନ ସରେ ତାର କଥା । ଯୋଗେଶ୍ୱର ପୁରୁଷ ସେ ବଡ଼ ସାମରଥା ॥ କଇଲାଶ କନ୍ଦରେ ଅଟଇ ତାର ଘର । ବଚନେ କହି ନୁହଇ ଅଲର୍ଘିତ ବୀର ॥ ଯୋଗେଶ୍ୱର ପୁରୁଷ ଅଟନ୍ତି ପଞ୍ଚାନନ । ତାହାର କୋପକୁ କେହି ନୁହନ୍ତି ଭାଜନ ॥ କୋଟି କୋଟି ବ୍ରହ୍ମା ବିଷ୍ଣୁ କୋଟି ସୁରପତି । ଏମାନେହେଁ ନାଶ ଗଲେ ଥାଏ ସେହୁ ବର୍ତ୍ତି ॥ ନିଶ୍ଚୟ ମୋହର ବୋଲ କର ନୃପମଣି । ତାହାସଙ୍ଗେ ଲଢ଼ିଲେ ତୁ ନ ପାରିବୁ ଜିଣି ॥ କୋଟି ଅଇଶ୍ୱର୍ଯ୍ୟ ତୋତେ ହୋଇଛି ପ୍ରାପତ । ଏହା ଛାଡ଼

ବର୍ଷାଇ ତୁ କରୁ ଲୋଭଚିତ୍ତ ॥ ଏଥିକୁ ନୃପତି ମନେ ନ କରିବୁ ଶ୍ଳେଷ । ସମ୍ମୁଖରେ କହୁଛୁ ମୁହିଁ କିଛି ନାହିଁ ଦୋଷ ॥ ମନ୍ତ୍ରୀର ବଚନେ କୋପକଲା ମହାଶୟ । କୋଟି ଈଶ୍ୱର ହୋଇଲେ କରିବି ମୁଁ ଜୟ ॥ ପ୍ରତିଜ୍ଞା କରିଣ ରାଜା ମନେ କଲା ଶ୍ଳେଷ । କଇଲାଶପୁରେ ଯାଇଁ ହୋଇଲା ପ୍ରବେଶ ॥ ଥାଟ ସୈନ୍ୟ ଘେନିଗଲା ମନର ଉଚାଟେ । ରୁଦ୍ରଗଣମାନେ ଆସି ଲାଗିଲେ ବାଟେ ॥ ନାନା ଶସ୍ତ୍ର ଧରିଣ ଅସୁର କଲେ ଯୁଦ୍ଧ । ହାତୀ ଘୋଡ଼ା ରଥୀ ଯେ ହୋଇଲେ ପ୍ରାଣେ ବଦ୍ଧ ॥ ତାହା ଦେଖି ଦାନବ ଯେ ମହାଭୟ କରି । ରୁଦ୍ରଗଣମାନଙ୍କୁ ସେ ଗୋଡ଼ାଇଲେ ମାରି ॥ ଈଶ୍ୱରଙ୍କ ସମ୍ମୁଖରେ କହିଲେ ରୁଦ୍ରଗଣ । ବୋଇଲେ ଦାନବ ଆସି କଲା ମହାରଣ ॥ ଆମ୍ଭେମାନେ ତାହାଙ୍କୁ ଯେ ନ ପାରିଲୁଁ ଜିଣି । ଶୁଣିକରି ଈଶ୍ୱର ଉଠିଲେ ଶିରଧୁଣି ॥ ମହାଯୁଦ୍ଧ କଲେ କ୍ଷଣେ ନାହିଁ ଯେ ବିଶ୍ରାମ । ବେଳ ବେଳ ଈଶ୍ୱର ଯେ କଲେ ମହାଶ୍ରମ ॥ ତ୍ରିଶୂଳ ଡମ୍ବରୁ ଧରି ବୃଷଭରେ ଚଢ଼ି । ଧବଳ ପର୍ବତ ଯେହ୍ନେ ଆସୁଥାଇ ମାଡ଼ି ॥ ଦେଖିଣ ଦନୁଜ ବଳ ପଳାଇଲେ ଡରେ । ମୟଦୈତ୍ୟ ପୁଣି ଏକା ରହିଲା ସମରେ ॥ ମୁଖାମୁଖି ସଂଗ୍ରାମେ ବଢ଼ିଲା ମହାରଣ । ଏକକୁ ଆରେକ ଯେ ନୁହନ୍ତି ହାରି ଜଣ ॥ ଅପ୍ରମୟ ଦେଖିଣ ଭାବିଲେ ଦୈତ୍ୟବଳ । ମନ୍ତ୍ରୀକି ବୋଇଲେ ମୁଁ ଯେ ନ କଲି ତୋ ବୋଲ ॥ କେମନ୍ତ ପ୍ରକାରେ ମୁଁ ଯେ ଜିଣିବଇଁ କାଶୀ । ଏଥିର ଉପାୟ ମୋତେ ମନ୍ତ୍ରୀ କହ ଆସି ॥ ରାଜାର ବଚନେ ମନ୍ତ୍ରୀ ବୁଝେ ସ୍ନେହ ବାଣୀ । ଯୋଗେଶ୍ୱର ପୁରୁଷ ଅଟନ୍ତି ଶୂଳପାଣି ॥ ଭାରିଯା ପାର୍ବତୀ ତାର ବ୍ରତ କଲା ନିଷ୍ଠା । ପତିରେ ଭକତି ସେ ଯେ ମହାସତୀ ଗୋଷ୍ଠୀ ॥ ତୋହର ଭାରିଯା ପତିବ୍ରତା ଯେଣୁ ହୋଇ । ତେଣୁକରି ଜିଣିଲୁ ତୁ ନବଖଣ୍ଡ ମହୀ ॥ ଏମନ୍ତ ବଚନ ମନ୍ତ୍ରୀ ମୁଖରୁ ସେ ଶୁଣି । ସେ ରାଜା ବୋଲଇ ଶୁଣ ମନ୍ତ୍ରୀ ମୋର ବାଣୀ ॥ କେମନ୍ତ ପ୍ରକାରେ ତାର ବ୍ରତ ହେବ ଭ୍ରଷ୍ଟ । ତାହା ହେଲେ ସଙ୍ଗରେ ହାରିବ ନୀଳକଣ୍ଠ ॥ ମୋର ନାମରତ୍ନଗୀତା ପଦ୍ୟ ଏ ବାଣୀ । ଦୀନକୃଷ୍ଣ ଦାସ ଏହା ଭାବରେ ଯେ ଭଣି ॥

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀ ହରିଅର୍ଜୁନ ସମ୍ବାଦେ ନାମ
ଦ୍ୱାବିଂଶୋଽଧ୍ୟାୟ ।

---

## ତ୍ରୟୋବିଂଶ ଅଧ୍ୟାୟ ।

ଅର୍ଜୁନ ଆଗରେ ଯେ କହନ୍ତି ବନମାଳୀ । ଶୁଣ ଭକ୍ତ ନାମରତ୍ନଗୀତା ଯେଉଁ ଭଳି ॥ ମହାଦେବ ଭାରିଯାକୁ କପଟେ ତୁ ହରି । ପତିବ୍ରତା ଭଗ୍ନ କରି ଈଶ୍ୱରଙ୍କୁ ମାରି ॥ ମାୟାରୂପ ଧରିକରି ଧାଇଁବାରେ ଯାଅ । ହିମବନ୍ତନନ୍ଦନୀକି ହରି ସୁଖ ପାଅ ॥ ମନ୍ତ୍ରୀର ବଚନ ରାଜା ଦେଇକର୍ଣ୍ଣେ ଶୁଣି । ମାୟାରୂପ ଧଇଲା ଦାନବ

ନୃପମଣି ॥ କଇଲାଶ କନ୍ଦରେ ସେ ଯୁଦ୍ଧ କରୁଥିଲା । ମାୟାରୂପ ଧରି ଆନ ରୂପେକ ହୋଇଲା ॥ ମହାଦେବ ଛାମୁରେ ସେ ଆନ ମୂର୍ତ୍ତି ଦେଇ । ଆପଣେ ଥିଲା ତହିଁ ଅନ୍ତର୍ଦ୍ଧାନ ହୋଇ ॥ ଏମନ୍ତ ସମୟେ ତୁ ହେ ଶୁଣସି ଅର୍ଜୁନ । ପାର୍ବତୀ ଛାମୁରେ ଅମ୍ଭେ କଲୁଁ ଯେ ଗମନ ॥ ବୋଇଲୁଁ ଗୋ ଶିବନାରୀ ଅବଧାନ ହୁଅ । କପଟେ ହରିବ ତୋତେ ମଧୁଦୈତ୍ୟସୁଅ ॥ ଈଶ୍ୱରଙ୍କ ସଙ୍ଗତେ ସେ ଯୁଦ୍ଧ କରୁଥିଲା । ମାୟାରୂପ ତେଣେ ଥୋଇ ଆପଣେ ଅଇଲା ॥ ତେଣୁକରି ବାରତା କହିଲୁଁ ଆମ୍ଭେ ଆସି । କାଷ୍ଠ ଯୋକ କରିଣ ତାହାକୁ ଶାପ ଦେସି ॥ ଏତେ ବୋଲି ଅନ୍ତର୍ଦ୍ଧାନେ ଗଲୁଁ ଆମ୍ଭେ ତହୁଁ । ଦାନବହିଁ ପ୍ରବେଶ ହୋଇଲା କହୁଁ କହୁଁ ॥ ପାର୍ବତୀ ଛାମୁରେ ଆସି ହୋଇଲା ପ୍ରବେଶ । ନିଜରୂପ ଗୋପ୍ୟ କଲା ଦୁରନ୍ତ ରାକ୍ଷସ ॥ ସଂଗ୍ରାମ କରିବା ପ୍ରାୟେ ଆସିଅଛୁ ସାଜ । ଉକତ ଯେ ବହୁଅଛୁ ଦେହେ ଶସ୍ତ୍ର ବାଜ ॥ ଈଶ୍ୱରଙ୍କ ଛଦ୍ମବର୍ଣ୍ଣ ଈଶ୍ୱରଙ୍କ ମୂର୍ତ୍ତି । ପାର୍ବତୀ ଛାମୁରେ ଆସି ମିଳିଲା ତତ୍‌କ୍ଷଣି ॥ ବୋଇଲେ ବହୁଯୁଦ୍ଧ ଅସୁର ସଙ୍ଗେ କଲୁଁ । ସଂଗ୍ରାମରେ ତାହାଙ୍କୁହିଁ ଜିଣି ନ ପାରିଲୁଁ ॥ କାମଲୋଭେ ଭ୍ରମ ଯେ ହୋଇଲା ମୋର ଦେହୀ । ସୁରତି ଦେଇଣ ମୋତେ ରଖ ପ୍ରାଣସହୀ ॥ ଦାନବର ବଚନେ ଯେ ବୋଇଲେ ପାର୍ବତୀ । ସଂଗ୍ରାମର ବେଳେ କାହିଁ କରଇ କେ ରତି ॥ ଏ କଥାରେ ମନ ତୁମ୍ଭେ କଅନାହିଁ ହର । ଯୁଦ୍ଧରେ ପଶିଣ ଆଗେ ଦାନବକୁ ମାର ॥ ଏବେ ତୁମ୍ଭେ କଷ୍ଟାଳ ନ କର ଦେବକାଶୀ । ଦାନବକୁ ମାରି ତୁମ୍ଭେ ଭୋଗ କର ଆସି ॥ ଏତେ ବୋଲି ମନଧ୍ୟାନେ ଲୟ କଲେ ହରି । ଜଗତ୍ର ବୋଇଲେ ଏ ନୁହଇ ମୋ କଇଶୀ ॥ ମାୟାରୂପ ଧରି ଆସିଅଛୁ ଯେ ରାକ୍ଷସ । ସତୀବ୍ରତ ଭାଙ୍ଗିଲେ ଈଶ୍ୱରଂ ଯିବେ ନାଶ ॥ ଏତେ ବୋଲି ମନରେ ଯେ ମହାତାପ ଘେନି ॥ ଦୈତ୍ୟକୁ ଶାପ ଦେଲେ ହିମବନ୍ତନନ୍ଦିନୀ ॥ ବୋଇଲେ ହେ ଦାନବ ଜୀବନ ତୋର ଯୋଉ । ମାୟାରୂପ ଧରିଣ ଆମ୍ଭଙ୍କୁ ହରି ଲୋଡ଼ୁ ॥ ମୋତେ ଯେବେ କପଟ ତୁ କଲୁରେ ଦଇତ୍ୟ । କାଷ୍ଠ ଯୋକ ହୋଇଣ ମର୍ତ୍ତ୍ୟରେ ହୁଅ ଜାତ ॥ ପାର୍ବତୀଙ୍କ ଶାପ ଯାଇ ପଡ଼ାଇଲା ତରେ । ମହାଯୁଦ୍ଧ କଲା ଯାଇଁ ଈଶ୍ୱର ସଙ୍ଗରେ ॥ ପାର୍ବତୀ ବୋଇଲେ ଅମ୍ଭ ଶ୍ରୀମୁଖକୁ ଚାହିଁ । ତାହା ପାଞ୍ଚନାରେ ତୁମ୍ଭେ ରହିଛ କପାଇଁ ॥ ଏ ଯୁଦ୍ଧରେ ଈଶ୍ୱରଙ୍କୁ ସେ ଅଇଲେ ଜିଣି । ସବୁ ଦେବତାଙ୍କ ମୁଣ୍ଡ ପକାଇବ ହାଣି ॥ ପାର୍ବତୀ ବାକ୍ୟ ଶୁଣିଣ ଆଜ୍ଞା ଦେଲୁ ଅମ୍ଭେ । ଏ କଥାକୁ କିଛି ଅନ୍ୟ ନ କରିବ ତୁମ୍ଭେ ॥ ସତ୍ୟ କରି ଅମ୍ଭେ ଯେ କହୁଛୁ ତୁମ୍ଭ ଆଗ । ତାହାର ମରଣ ଆସି ହୋଇଲାଣି ଯାଗ ॥ ଏଥିଅନନ୍ତରେ ତୁ ହେ ଶୁଣ ସବ୍ୟସାଚୀ । ପାର୍ବତୀ ଛାମୁରେ ଆସି ଏତେ କଥା ପାଞ୍ଚି ॥ ମନ ଉଦବେଗେ ଯେ ଗମନ କଲୁଁ ଧୀରେ । ପ୍ରବେଶ ହୋଇଲୁ ମଧୁଦୈତ୍ୟର ଯେ ପୁରେ ॥ ଦଣ୍ଡ କମଣ୍ଡଳୁ ଯେ ସନ୍ନ୍ୟାସୀ ବେଶ ହୋଇ । ବୃନ୍ଦାବତୀ ତୋଷାରେ ପ୍ରବେଶ ହେଲୁ ଯାଇଁ ॥ ମଧୁଦୈତ୍ୟ ସ୍ୱରୂପରେ କଲୁଁ ଏକ ପିଣ୍ଡ ।

ମାୟାକରି ଥୋଇଲେ କାଟିଣ ତାର ମୁଣ୍ଡ । ଗଣ୍ଡି ମୁଣ୍ଡ ଏକକରି ପଡ଼ିଅଛୁ ତୁଳ । ଛଳ ପାଇ ଆସନେ ବସିଲେ ଆମ୍ଭେ ଯାଇଁ ॥ ମାୟାମୋହ ପେଷିଦେଲେ ବୃନ୍ଦାବତୀ ଆଗେ । ତୋଷ୍ଟା ବୁଲିବାକୁ ବାମା ଆଇଲା ସେ ବେଗେ ॥ ଦାସୀ ପରିବାସୀ ଘେନି ଆଇଲା ସେ ନାରୀ । ତୋଷ୍ଟାମାନ ବୁଲିଅଛୁ ଅପୂର୍ବ ସୁନ୍ଦରୀ ॥ ସେହି ବୃନ୍ଦାବତୀ ଶୁଣ ପରମ ଲକ୍ଷଣ । ମୟୂରଦୈତ୍ୟ ତାର ପତି ଅଟଇ ପ୍ରମାଣ ॥ ଆମ୍ଭର ପ୍ରଭୁ ସେ ଅଟେ ଶ୍ରୀଶ୍ୟାମସୁନ୍ଦର । ଶ୍ରୀ ପଦ୍ମା ଯେ ଶ୍ରୀମତୀ ଉପରେ ଅବତାର ॥ ମୋହ ନାମରତ୍ନ ଏ ଅମୃତ ରସମୟ । ଦୀନକୃଷ୍ଣ ଦାସ କଲା ସ୍ତବରେ ନିର୍ଣ୍ଣୟ ।

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀ ହରିଅର୍ଜୁନ ସମ୍ବାଦେ ନାମ
ତ୍ରୟୋବିଂଶୋଽଧ୍ୟାୟଃ ।

---

## ଚତୁର୍ବିଂଶ ଅଧ୍ୟାୟ ।

ଅର୍ଜୁନର ଆଗରେ କହନ୍ତି ଚକ୍ରପାଣି । ହେତୁ ମନେ ଶୁଣ ତୁ ତୋ ନାମରତ୍ନ ବାଣୀ ॥ ମୟୂରଦୈତ୍ୟ ଗଣ୍ଡି ମୁଣ୍ଡ ପଡ଼ିଅଛୁ ଯହିଁ । ବୃନ୍ଦାବତୀ ପ୍ରବେଶ ହୋଇଲେ ତହିଁ ଯାଇଁ ॥ ସନ୍ନ୍ୟାସିଙ୍କ ପାଶେ ଯାଇଁ ମାନ୍ୟଧର୍ମ କଲା । ତାହାଣ ଆଡ଼କୁ ସେହି ହେରିଛୁ ଗହଳ ॥ ଦେଖିଲାକ ମୟୂରଦୈତ୍ୟ ଗଣ୍ଡି ମୁଣ୍ଡ ବେନି । ନିକଟକୁ ଯାଇ ତାର ହୋଇଲା କାମିନୀ ॥ ବିସ୍ମରି ବୋଇଲା ମୋର ମହାସତୀ-ପଣ । ଭଗ୍ନ ହୋଇ ପଡ଼ିଲାକ ଏମନ୍ତ କଷଣ ॥ ଏ ମୋହର ନିଜପତି ମୟୂରଦୈତ୍ୟ ରାୟ । କେମନ୍ତ ପ୍ରକାରେ ଏହା କେ କଲାକ କ୍ଷୟ ॥ ବିସ୍ମରି ବୋଇଲା ଏହା ଜାଣ ବ ସନ୍ନ୍ୟାସ । ଏ ମୋହର ପତିକି କେ କଲା ପ୍ରାଣେ ନାଶ ॥ ଯୋଗେଶ୍ୱର ପୁରୁଷ ତୁ କହ ସତ୍ୟବାଣୀ । ଏ ମୋହର ଭର୍ତ୍ତାକୁ କେ ପକାଇଲା ହାଣି ॥ ବୃନ୍ଦାବତୀ ବଚନେ ଲାଗିଲା ଆମ୍ଭ ଲୟ । ବୋଇଲେ ସୁନ୍ଦରି ଗୋ ନ କର ମନେ ଭୟ ॥ ତୋହର ଯେ ନିଜ ପତି ମନ୍ଦକୃତ୍ୟ କଲା । ଈଶ୍ୱର ସଙ୍ଗତେ ବାଦେ ଯୁଦ୍ଧ କରି ଗଲା ॥ ଈଶ୍ୱର ଭାରିଯା ସେ ଯେ ନାମ ତା ପାର୍ବତୀ । ପତିର ଭକତା ସେ ଯେ ଅଟେ ମହାସତୀ ॥ ତାହାର ଯେ ବ୍ରତ ଗୋଷ୍ଟା ନିସ୍ତାର ଯେଣୁ । ଆପଣା ଭର୍ତ୍ତାକୁ ସେ ଯେ ରକ୍ଷା କଲା ତେଣୁ ॥ ତୋହ ସତୀବ୍ରତ ସେ ଯେ ଅଟଇ ନିର୍ମଳ । ବୃହସ୍ପର ନାମ ଧରି ଡାକ ଏକ ବେଳ ॥ ଆପଣା ପତିକି ଯେବେ ଖାଇବୁ ପୁଣି । ପତିର ଭକତା ବୋଲି ହେବେ ସିନା ଜାଣି ॥ ଏମନ୍ତ ବୋଲିଣ ତାକୁ ମାୟା ଆମ୍ଭେ କଲୁଁ । ନିଜରୂପ ଘେନି ଯାଇଁ ପିଣ୍ଡରେ ପଶିଲୁଁ ॥ କୂଟ କରି ଆସନରେ ଲୁଚାଇଲୁଁ ଯଶ । ଜାଣି ନ ପାରିଲା ବାମା କଥାର ସନ୍ଦେଶ ॥ ପତି ନାମ ଧରିଣ ଡାକିଲା ବୃନ୍ଦାବତୀ । ଜୀବଦାନ ପାଇ ପିଣ୍ଡ ଉଠିଲା ତତ୍ରତ ॥ ମୟୂରଦୈତ୍ୟ ପ୍ରାୟ ଆମ୍ଭେ ବସିଲୁଁ ଯେ ତାକୁ । ହସ୍ତ ଧରି ନେଲା ସେ ଆପଣା ନଗରକୁ ॥ ଆମ୍ଭ ଅଙ୍ଗ ଗୋଷ୍ଟାକୁ ବହୁତ ମାନ୍ୟ କଲା । ବୃହସ୍ପର ହସ୍ତ ଧରି ବେଗେ

ଘେନିଗଲା ॥ ସ୍ନାନ ଯେ ତାହାଙ୍କୁ ବେଗେ କରାଇ ସୁନ୍ଦରୀ । ଶଯ୍ୟାରେ ଶୋଇଲା ସେ ଆମ୍ଭଙ୍କୁ କୋଳକରି ॥ ପ୍ରୀତି ସୁଖ ଭାବରେ ରମଣରସ କଲୁଁ । ସତୀବ୍ରତପଣ ଗୋଷ୍ଠୀ ଭଗ୍ନକରି ଦେଲୁଁ ॥ ସେହିକ୍ଷଣି ଅପ୍ରତିଷ୍ଠା ହୋଇଲା ତା ପିଣ୍ଡ । ଈଶ୍ୱର କାଟିଲେ ଏଣେ ମତ୍ସ୍ୟଦୈତ୍ୟ ମୁଣ୍ଡ ॥ ଆମ୍ଭ ପ୍ରୀତି ଭାବକୁ ତା ନ ରହିଲା ମନ । ବୋଇଲା ତୋ ରତିସୁଖ ନାଶିଲାତ ଆନ ॥ କେବଣ ପୁରୁଷ ତୁ ହୋ ମୋତେ ସେତ କହ । ନ କହିଲେ ଶାପ ଦେଇ ନାଶଯିବ ଦେହ । ବୃନ୍ଦାବତୀ ବଚନେ ଧଇଲୁଁ ତାର ହସ୍ତ । ବୋଇଲୁଁ ନ ଦଅ ଶାପ ଆମ୍ଭେ ଜଗନ୍ନାଥ ॥ ସ୍ୱାମୀ ନାଶଗଲା ତୁତ ପାଉ ମନବ୍ୟଥା । ଏବେ ଆମ୍ଭେ ତୋହର ହୋଇବୁଁ ଭରତାର୍ତ୍ତା ॥ ତାହା ଶୋଗ ଯେତେ ଥିଲା ତେତେଦିନ ଗଲା । ଦେବତାଙ୍କୁ ଛିଡ଼ାସଂ ଈଶ୍ୱର ହସ୍ତେ ମଲା ॥ ସତେହେଁ ସେ ଆମ୍ଭ ତହୁଁ ନୁହଇ ସେ ବଡ଼ । ହୋଇଲୁ ଆମ୍ଭର ପତ୍ନୀ ମନଭ୍ରାନ୍ତି ଛଡ଼ ॥ ଶ୍ରୀମୁଖ ବଚନେ ବୃନ୍ଦାବତୀ କଲେ କ୍ରୋଧ । ବୋଇଲେ ମୁଁ ଶାପ ତୋତେ ଦେବଇଁ ଅବଶ୍ୟ ॥ ମର୍ତ୍ତ୍ୟ ଜନେ ବରଣ ତୁ ଘେନାଇଲୁ ପ୍ରାଣ । ମୋହଶାପ ପଡ଼ୁ ତୋତେ ହୁଅ ତୁ ପାଷାଣ ॥ ବୃନ୍ଦାବତୀ ବଚନେ ଯେ କଲୁଁ ମହାକୋପ । ବୋଇଲୁ ଯେ ଆମ୍ଭେ ତୋତେ ଦେଉଅଛୁଁ ଶାପ ॥ ଆମ୍ଭେ ଯେବେ ପାଷାଣ ହୋଇବୁଁ ତୋର ବୋଲେ । ତୁହି ଏବେ କାଷ୍ଠ ହୋଇଥିବୁ ତାରଭୁଲେ ॥ ଚନ୍ଦ୍ର ସୂର୍ଯ୍ୟ ଯେତେଦିନ ଥିବେ ବସୁନ୍ଧରୀ । ଆମ୍ଭ ଶାପ କେବେହେଁ ନୁହଇ ଆନକରି ॥ ଶୁଣିଣ ବୃନ୍ଦାବତୀର ତୁଟିଲା ସାହସ । ନୋଉଁଠି ଆମ୍ଭଙ୍କୁ ଆଉ ନ କହିଲା ଭାଷ ॥ କ୍ଷଣେକ ରହି ଆମ୍ଭଙ୍କୁ ପୁଣି କଲା ସ୍ତୁତି । ବୋଇଲାକ ବସ୍ତୁ ତୁ ହୋ ମିଛୁଅଁ ଯେ ଅଛି । ଯେତେବେଳେ ତତ୍ୟସ୍ଥଳେ ଥିଲୁଁ ଦବ୍ୟସ୍ଥାନେ । ସ୍ୱଧାକୃଷ୍ଣ ବ ବୋଇଲେ ନାହିଁ ବ ତୋ ମନେ ॥ ତାହାଙ୍କ ବଚନ ବୃଥା ନ ଅର୍ଥକୁ ଯିବ । ବୋଇଲେ ତୋହର ମନେ ଅବଶ୍ୟ ସେ ଥିବ ॥ ତୁ ତାହାକୁ ଶାପ ଦେଇ କରିବୁ ପାଷାଣ । ପ୍ରଭୁଙ୍କର ବଚନ କି ହୋଏ ଅପ୍ରମାଣ ॥ ତେଣୁକରି ତୋତେ ଘେନି ଅଇଲି ଯେ ମୁହିଁ । ତୋ ଅଂଶରେ ଉପୁଜିଲା ମତ୍ସ୍ୟଦୈତ୍ୟ ହୋଇ ॥ ତାହାକୁ ତୁ ମାରିଇଲୁ ମହେଶ୍ୱର ହସ୍ତେ । ସତୀବ୍ରତ ଭାଙ୍ଗି ପୁଣ ହରିଲୁ ତୁ ମୋତେ ॥ ତେତେବେଳେ ମୋହ ଆଗେ କହିଲୁ ଯେ କଥା । କହିଲୁ ତୋହର ଆମ୍ଭେ ହୋଇବୁଁ ଯେ ଭର୍ତ୍ତା ॥ ଅଶୀକୋଟି ଅଛନ୍ତି ତୋହର ପାଟ୍ଟସ୍ତ୍ରୀଣୀ । ତୁହି ଯେ ମୋତେ ଅବଶ୍ୟ କରିବୁ ଘରଣୀ ॥ ସପତଣୀ ବୋଲି ମୋତେ କରିବେ ଯେ କକ୍ଷା । ତହାଙ୍କ ସମ୍ମୁଖେ ମୁଁ କେମନ୍ତେ ହେବି ରକ୍ଷା ॥ ଏଥିକି କାରଣ ମୋତେ କହ ମହାବାହୁ । ତୋହ ଶାପ ମୋହ ଶାପ ଅକାରଣ ହେଉ ॥ ଆମ୍ଭେ ତାକୁ ବୋଇଲୁ ଏ କଥାମାନ ଛଡ଼ । ସବୁ ପାଟରାଣୀଙ୍କୁ କରିବ ତୋତେ ବଡ଼ ॥ ସବୁ ମହାଦେଈ ତୋର ତଳେ ଥିବେ ରହି । ତୋତେ ଏକାକରି ମୁଁ ମଥାରେ ଥିବି ବହି ॥ ବୃନ୍ଦାବତୀ ବୋଇଲା ମୁଁ ନ କରଇ ପ୍ରତେ । କେମନ୍ତ ପ୍ରକାରେ ଶିରେ ବହିବୁ ତୁ ମୋତେ ॥

ଅମ୍ଭେ ତାକୁ ବୋଇଲୁଁ ତୁ ହୋଇବୁ ତୁଳସୀ । ବୈଷ୍ଣବଙ୍କ ମଥାର ଉପରେ ଥିବୁ ବସି ॥ ଏହା ଶୁଣି ସନ୍ତୋଷ ହୋଇଲା ବୃନ୍ଦାବତୀ । ଆନନ୍ଦେ ଉତ୍ସବ ଯେ ହୋଇଲା ତାର ମତି ॥ ଶ୍ରୀକୃଷ୍ଣ ବଚନେ ସବୁ ମନୁ ଗଲା ତ୍ରାସ । ନାମରତ୍ନଗୀତାରେ କହିଲେ କୃଷ୍ଣ ଦାସ ॥

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀ ହରିଅର୍ଜ୍ଜୁନ ସମ୍ବାଦେ ନାମ ଚତୁର୍ବିଂଶୋଽଧ୍ୟାୟଃ ।

---

## ପଞ୍ଚବିଂଶ ଅଧ୍ୟାୟ ।

ଏଥିଅନନ୍ତରେ ଭୁ ହେ। ଶୁଣ ସବ୍ୟସାଚି । ବେଦଜ୍ଞ ହୋଇ ମଯୂରଧ୍ୱଜ ପଡିଅଛି ॥ ମହାଦେବ ତାହାଙ୍କୁ ଯେ ପ୍ରାଣେ ନାଶ କଲା । ଭୃଗୁଅଂଶ ଗୋଟି ଆମ୍ଭ ସମ୍ମୁଖୁ ଅଇଲା ॥ କୋପଭର ହୋଇଣ ଆମ୍ଭଙ୍କୁ ଦେଲା ଶାପ । ବୋଇଲା ତୁ ଦାମ୍ଭ ହୋ ଅର୍ଜିଲୁ ମହାପାପ ॥ ମୋହର ପକ୍ଷୀଙ୍କୁ ହରି ମୋତେ ନାଶ କଲୁ । ବ୍ରହ୍ମାଣ୍ଡଠାକୁର ହୋଇ ଅଧର୍ମକୁ ଗଲୁ ॥ ବୈଷ୍ଣବଙ୍କ ଶାପ ତୋତେ ଦେଉଅଛୁ ମୁହିଁ । ତିନିଭୁବନରେ ଯେ ରକ୍ଷନ୍ତା କେହି ନାହିଁ ॥ ଧର୍ମଶାସ୍ତ୍ର ପ୍ରମାଣେ ତୁ ମନରେ ବିଚାର । ଦାସ୍ତିବଇଶ୍ୱର ଆଉ କାହିଁ ଅଛି ପାର ॥ ବୃନ୍ଦାବତୀ ଶାପରେ ପାଷାଣ କଲେ ତୋତେ । ପାର୍ବ୍ବତୀ ଯେ ଶାପ ଦେଇ କାଷ୍ଠ କଲା ମୋତେ ॥ ସେହି କାଷ୍ଠ ଯୋଗ କରି ହୃଦେ ହେ। ଧରସି । ପତେଣ୍ଡ ସେ କାଷ୍ଠ ଥିବ ଅରଣ୍ୟରେ ବସି ॥ ଏ ମୋହର ଶାପ ତୋତେ ଯୁଗେ ଯୁଗେ ଥାଉ । କାହାରି ବୋଲରେ ନାସ୍ତି କରି ନୋହେ ଆଉ ॥ ଅମ୍ଭେ ତାକୁ ବୋଇଲୁ ନ ଦଅ ତୁମ୍ଭେ ଶାପ । ବହନ କରି ଗଢିବୁଁ ତୋହର ନିଜ ରୂପ ॥ ପାର୍ବ୍ବତୀ ଯେ କୋପଭରେ କାଷ୍ଠ କଲା ତୋତେ । ତହିଁରେ ସେ ଶାପ ଆଉ ନ ଦଅ ତୁ ମୋତେ ॥ ଏତେ ବୋଲି ଉର୍ବ୍ବଶୀ ସମ୍ମୁଖୁ ତାକୁ ନେଲୁଁ । ବଜ୍ରହସ୍ତ ବୁଲାଇ ତା ଦେହ ବଜ୍ର କଲୁଁ ॥ କୌଣସି ପ୍ରକାରେ ସେ ନ ଛଳେ ଆଉ ବୋଲ । ବୋଇଲା ମୁଁ ତୋହ କଥା ନ ଶୁଣିଇ ଭଲ ॥ ଚନ୍ଦ୍ର ସୂର୍ଯ୍ୟ ଥିବା ଯାଏ ଶାପ ଥିବ ମୋର । ପତେଣ୍ଡ ସେ କାଷ୍ଠ ଥିବ ହୃଦପଦ୍ମ ତୋର ॥ ଏମନ୍ତ ବୋଲିଣ ମଯୂରଧ୍ୱଜ ପ୍ରାଣ ଗଲା । ବୃନ୍ଦାବତୀ ଶାପେ ଦେହ ପାଷାଣ ମୋ ହେଲା ॥ ଅମ୍ଭର ଶାପରେ ବୃକ୍ଷ ହେଲା ବୃନ୍ଦାବତୀ । ପାର୍ବ୍ବତୀ ଶାପରେ କାଷ୍ଠ ମଧ୍ୟେ ନରପତି ॥ ସାବଧାନ ହୋଇ ତୁ ହେ। ଶୁଣ ସାମରଥୀ । ତିନିବହ୍ନି ପଡିଲା ଯେ ତିନି ଶାପ କାଥା ॥ ଏଥିଅନନ୍ତରେ ତୁ ହେ। ଶୁଣ କୁନ୍ତୀସୁତ । ଅମ୍ଭେ ଯେ ହୋଇଲୁଁ ଦାମ୍ଭ ପାଷାଣ ପତିତ ॥ ବସୁନ୍ଧରୀ ଚିନ୍ତା ଅମ୍ଭ ମନକୁ ଛାଡିଲା । ତିନି ଭୁବନରେ କଥା ଗମକ ପଡିଲା ॥ ତେତିଶକୋଟି ଦେବତାମାନେ ମନେ ହେଜ । ଦାମ୍ଭ କାହିଁ ଗଲେ ବୋଲି ନ ପାଇଲେ ଖୋଜ ॥ ବ୍ରହ୍ମାଦ ସହିତେ ଦେବ ବରୁଣ କୁବେର । ଖୋଜି ଖୋଜି କରି ଗଲେ କଇଲାସ ପୁର ॥

ଈଶ୍ୱରଙ୍କୁ ବୋଇଲେ ଶୁଣିମା ଦେବ କାଶୀ । ବ୍ରହ୍ମାଣ୍ଡପାଳନା ଭଷ୍ଟେ ନାଶ ଗଲା ଆସି ॥ ସଂସାର କରତା ଯେ ଠାକୁର ଭବରାତ୍ରୀ । ଯେଉଁ ଆଡେ ଗଲେ ଖୋଜ ନ ପାଇଲୁଁ କେହୁ ॥ ତେଣୁକରି ତୁମ୍ଭଙ୍କୁ କହୁଲୁଁ ପଞ୍ଚମୁଖ । ସମାଧିରେ ବସି ତୁମ୍ଭେ ଜ୍ଞାନପଥେ ଦେଖ ॥ ଶୁଣିକରି ସନ୍ତୋଷ ହୋଇଲେ ତ୍ରିଲୋଚନ । ଲକ୍ଷ୍ୟ ସେହୁ ଚରଣ ଜ୍ଞାନରେ ଦେଲେ ମନ ॥ ବୋଇଲେ ଦେବତାଗଣ ନ ଜାଣିଲ ତୁମ୍ଭେ । ଦକ୍ଷ୍ଣ ଯେଉଁ ଠାରେ ଅଛନ୍ତି କହୁଦେବା ଆମ୍ଭେ ॥ ବସୁନ୍ଧରୀ ଛନ୍ତି ଯେ ଖଣ୍ଡଳ ନାସ୍ତି- ଯୁଣ । ବୃନ୍ଦାବତୀ ଶାପରେ ସେ ହୋଇଲେ ପାଷାଣ ॥ ସମସ୍ତେହେଁ ଚଳ ଏବେ ତାଙ୍କଠାକୁ ଯିବା । ଅଇନ୍ତ ପାଦପଦ୍ମରେ ସେବା କରୁଥିବା ॥ ଏସନ ବୋଲି ଆସନ ତେଜି ଦେବଗଣେ । ପାର୍ବତୀଙ୍କି ବୋଲେ ଘେନି ବୃଷଭରେ ବଜେ ॥ ଦେବତା- ବୃନ୍ଦଙ୍କ ସଙ୍ଗେ ଘେନି ଦେବକାଶୀ । ଦକ୍ଷ୍ଣ ପାଷାଣ ଯେଠାରେ ମିଳିଲେକ ଆସି ॥ ତେତିଶକୋଟି ଦେବତା ବ୍ରହ୍ମାଦି ଶଙ୍କର । ସମସ୍ତେ ପ୍ରବେଶ ଆସି ହୋଇଲେ ଯେଠାର ॥ ଏମନ୍ତ ଭାରତୀ ଶୁଣି ଶ୍ରୀମତୀରମଣ । ପରମଭକ୍ତ୍ୟରେ ସେ ଯେ ବଜେ କଲେ ପୁଣ ॥ ଆମ୍ଭଙ୍କୁ ବୋଇଲେ ଶୁଣ ବ୍ରହ୍ମାଣ୍ଡଠାକୁର । ଏମନ୍ତ ଯେ ବଣା ପୁଣ ହେଲୁ ଚକ୍ରଧର ॥ ଚକ୍ରକୂଟ ମାୟା ତୋର କେଉଁ କଳି ଗଲା । ପାଷାଣ ସ୍ୱରୂପ ତୋର ଯେବେ ଏ ହୋଇଲା ॥ ମୋହ ନାମରତ୍ନ ଏ ଯେ ଗୀତା ରସ ସାର । ଦୀନକୃଷ୍ଣ ଦାସ ଏହା ଭାବେ ନିରନ୍ତର ॥

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀ ହରିଅର୍ଜ୍ଜୁନ ସମ୍ବାଦେ ନାମ
ପଞ୍ଚତ୍ରିଂଶୋଽଧ୍ୟାୟଃ ।

## ଷଷ୍ଠତ୍ରିଂଶ ଅଧ୍ୟାୟ ।

ଅର୍ଜ୍ଜୁନ ବଚନେ ଯେ କହନ୍ତି ଭଗବାନ । ଏକମନେ ଶୁଣ ତୁ ହେ ପାଣ୍ଡୁର ନନ୍ଦନ ॥ ବୋଇଲେ ଦକ୍ଷ୍ଣ ପାଷାଣ ଶିଳା ବ୍ରହ୍ମଚକ୍ର । ଦ୍ୱାଦଶ ଯୋଜନ ମାତ୍ର ରହିଛି ପର୍ବତ ॥ ଅତି ବଡ଼ ଲକ୍ଷଣ ଯେ ସେହୁ ଶିଳା ସାଜେ । ଚନ୍ଦ୍ର ଷଡ଼ଇନ୍ଦ୍ର ମିଶା ତିଳକ ବସିଲେ ॥ ଚତୁର୍ଦ୍ଧା ମୂରତି ମଧ୍ୟେ ବଜେ ଲକ୍ଷ୍ମୀକାନ୍ତ । ବେଢ଼ି ପାଖେ ବେଢ଼ି ଜଳ ମଧ୍ୟରେ ଅନନ୍ତ ॥ ଅର୍ଜ୍ଜୁନ ବୋଇଲେ ତୁମ୍ଭେ ଶୁଣ ନନ୍ଦସୁତେ । କଥାଏ ପଚାରୁଅଛି କହ ତ ନା ମୋତେ ॥ ତୁମ୍ଭେ ଯେ ବୋଇଲ ଦକ୍ଷ୍ଣ ପାଷାଣ ପର୍ବତ । ବ୍ରହ୍ମା କଥା କେହୁ ଯେ କରଇ ଅଭଯାଚ । ଶ୍ରୀହରି ବୋଇଲେ ଯାହା ପୁଚ୍ଛାକଲୁ ମୋତେ । ଏ କଥା ଗୋଷ୍ଠାହିଁ ଫେଡ଼ି କହୁଦେବା ତୋତେ ॥ ବୃନ୍ଦାବତୀ ଶାପରେ ପାଷାଣ ମୋତେ କଲା । ଦକ୍ଷ୍ଣ ପାଷାଣକୁ ଯାଇଁ ଦର୍ଶନ ସେ କଲା ॥ ନିଜରୂପ ଆମ୍ଭର ନୁହଇ କେବେ ନାଶ । ଏ କଥା ପ୍ରମାଣ ତୁଂହେ ଜାଣ ପାଣ୍ଡୁଶିଷ୍ୟ । ତେତିଶକୋଟି ଦେବତା ସମସ୍ତେହେଁ ଗଲେ । ଦକ୍ଷ୍ଣ ପାଷାଣକୁ ଯାଇଁ ଦର୍ଶନ ସେ କଲେ ॥ ମଧ୍ୟଦ୍ୱିତୀୟର ବୀରବଇଶୀ ଆମ୍ଭେ ଯନ୍ତି । କଳ୍ପକୋଟିଯୋଗ କଥା କଲୁଁ

ଅଟେମ୍ଭ ତହୁଁ ॥ ଯୁବତେ ତା ପତ୍ନୀ ହର ହୋଇଲେ ଯେ ଦୋଣୀ । ନଦୀର ବାହିଲ ଶିଳା ତାହାପରେ ବସି । ଅନେକ ପ୍ରକାରେ ଶିଳା ନାନାବର୍ଣ୍ଣେ ଦୃଶ୍ୟ । ପଥରରେ ପଶି ପୋକ କାଟଇ ବିଶେଷ ॥ ନୃସିଂହ ବାମନ ରୂପ ବର୍ତ୍ତୁଳ ଆକୃତି । ଦାମୋଦର ପୀତବାସ ଲକ୍ଷ୍ମୀ ସରସ୍ୱତୀ ॥ ମତ୍ସ୍ୟ କୂର୍ମ ବରାହ ବାମନ ପର୍ଶୁରାମ । ଶ୍ରୀରାମ ବାସୁଦେବ ଏ ଶିଳାଙ୍କର ନାମ ॥ ସୁଧା ଯେ ମାଧବ ଉମା ମହେଶ୍ୱର ଅଟେ । ନାନ ବର୍ଣ୍ଣେ କାଟଇ ସେ ଜାଲମାନ ଭେଦ ॥ ଶ୍ରୀରାମ ଶ୍ରୀହରି ରାମ ବନମାଳୀ ମୂଳେ । ବଉଦ୍ଧ କଲଙ୍କୀ ରୂପ ଶୋଭିବନ ଠୂଳେ ॥ ଦେଖି ଦେବେ ବୋଇଲେ ସେ ଏହୁ ଭଗବାନ । ପାଷାଣ ହୋଇବ କାହିଁ ଶଙ୍ଖଚକ୍ର ଚିହ୍ନ ॥ ଏତେ ବୋଲି ଦେବତାଏ ଶିରେ କର ଦେଲେ । ପାଦପଦ୍ମେ ପଡ଼ିଣ ଅନେକ ସ୍ତୁତି କଲେ ॥ ବ୍ରହ୍ମାଦି ସୁର ମୁନି ଯେ ଈଶ ଈଶ୍ୱର । ଶିଳା ରୂପ ଦେଖିଣ ହୋଇଲେ ମହାଭୋଳ ॥ ଅର୍ଜୁନ ବୋଇଲେ ଶୁଣ ଭକତଙ୍କ ଧନ । ଭଲ କଥା ଗୋଷ୍ଠୀଏ ପଡ଼ିଲା ମୋର ମନ ॥ ସର୍ବଦେବତାନନ୍ଦନ ଯେ ସର୍ବଦେବତ୍ୟ ରାସ୍ତେ । ପାର୍ବତୀଙ୍କ ଶାପେ ସେ ଯେ କାଷ୍ଟପୋକ ହୁଏ ॥ ବଜ୍ରକାଟ ବୋଲି ତାକୁ ଜଗତେ ବୋଲନ୍ତି । କପର ବଦନ ତାର କେଉଁ ଭାବେ ମୂର୍ତ୍ତି । ପେଟ ତାର କେମନ୍ତେ ଲକ୍ଷଣ କେଉଁ ଭାବେ । ଏକଥା କହିବ ମୋତେ କହଂକନା ଏବେ ॥ ଶ୍ରୀହରି ବୋଇଲେ ଯେ ଅର୍ଜୁନ ମୁଖ ଶୁହଁ । ବୁଦ୍ଧିରେ ଜଣନ୍ତା ତୋତେ ପୃଥିବୀରେ ନାହିଁ ॥ ବଜ୍ରକାଟ କଥା ଗୋଷ୍ଠୀ ପଚାରିଲୁ ଯେବେ । ସେ ପୋକର ମହିମା କହିବା ତୋତେ ଏବେ ॥ ଗଣ୍ଡକି ନାମରେ ଏକ ଗିରିବର ସନ୍ଧି । ଉଭଂଶ ଯୋଜନ ସେ ଉପରକୁ ଉଚ୍ଚ ॥ ବତିଶ ଯୋଜନ ଯେ ତହିଁର ଦୀର୍ଘ ପ୍ରସ୍ଥ । ସ୍ଥଳବର୍ଣ୍ଣ ପ୍ରାୟେକ ବସଇ ତାର କ୍ଷେତ୍ର ॥ ନାନାବର୍ଣ୍ଣେ ପୁଷ୍ପ ତହିଁ ନାନାବର୍ଣ୍ଣେ ଶୋଭା । ପୃଥିବୀର ଅପୂର୍ବ ସେ ଗିରିବର ଗୋଷ୍ଠୀ । କୋଲାହଳ ନାମେ ବନ ପର୍ବତର ତଳେ । ଶାଳଗ୍ରାମ ଶିଳା ଉପୁଜଇ ସର୍ବକାଳେ ॥ ପ୍ରଥମେ ଯେ ଶିଳା ଜାତ ହୋଇବ ଭିତର । ଶ୍ରୀମତୀରମଣ ବୋଲି ନାମ ହେବ ତାର ॥ ତାକୁ ପୂଜା କରିବେ ଯେ ଶ୍ରୀମତୀରମଣ । ପରମଭକ୍ତ୍ୟରେ ଶିଳା ରହିବ ଯେ ପୁଣ ॥ ମୋହ ନାମରତ୍ନ ଏ ଯେ ଗୀତାରମ୍ଭ ଯେଣୁ । ଦୀନକୃଷ୍ଣ ଦାସ ଏହା କହୁଥାଇ ତେଣୁ ॥

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀ ହରିଅର୍ଜୁନ ସମ୍ବାଦେ ନାମ
ଷଷ୍ଠବିଂଶୋଽଧ୍ୟାୟଃ ॥

---

## ସପ୍ତବିଂଶ ଅଧ୍ୟାୟ ।

ଅର୍ଜୁନ ଅଗରେ କେ କହନ୍ତି ଭଗବାନ । ମୋର ନାମରତ୍ନଗୀତା ଅଟଇ ପ୍ରଧାନ ॥ ବଜ୍ରକାଟ ପୋକମାନେ ରହୁଛନ୍ତି ତହିଁ । ସେ ପୋକମାନଙ୍କ ପାର୍ଥ ପଟାନ୍ତର ନାହିଁ ॥ ଏକା ପୋକଦେହେ ଯେ ଦ୍ୱାଦଶ ବର୍ଣ୍ଣ ଚିହ୍ନ । କର ଯେ ଚରଣ

ନାସା ତଳେ ଅନୁଆନ ॥ ମନୁଷ୍ୟ ଦେହରେ କେ କହିପାରିବ ତାହା । ସ୍ୱୟଂ ବିଶ୍ୱକର୍ମା ବସି ଗଢ଼ିଅଛି ଯାହା ॥ ତେଣୁକରି ଅର୍ଜୁନ ହେ ଆଗେ କହୁଅଛୁ । ଏକା ଯୋଡ଼ ଗୋଷ୍ଠାକର ଷୋଳଗୋଷ୍ଠା ଅଛି ॥ ଅଷ୍ଟଗୋଷ୍ଠା ମୁଣ୍ଡ ସେ ବତିଶ ଆଠ ଗୋଡ଼ । ଛୟାଣୋଇ ନଖାଙ୍ଗୁଷ୍ଠି ବକ୍ର ତୀକ୍ଷ୍ଣଦାଢ଼ ॥ ଦନ୍ତ ହୀରାବର୍ଣ୍ଣ ପ୍ରାପ୍ତ ମୁକୁତାର ପନ୍ତି । ଅଧର ସୁରଙ୍ଗ ଯେ ସୁବର୍ଣ୍ଣ ପ୍ରାପ୍ତ ଜ୍ୟୋତି ॥ ପିଠି ରଙ୍ଗବର୍ଣ୍ଣ ଯେ ସୁବର୍ଣ୍ଣ ଜ୍ୟୋତି ପ୍ରାପ୍ତେ । କଣ୍ଠଲଗଠାରୁ ହାଦେ ମଳଗଣ୍ଡ ଯାଏ ॥ ନୀଳବର୍ଣ୍ଣ ପ୍ରାପ୍ତକ ନାସିକା ବର୍ଣ୍ଣ ଜ୍ୟୋତି । ଅଦ୍ଭୁତର ତେଜ ପ୍ରାପ୍ତ ଲୋଚନର କାନ୍ତି ॥ ଗୋଡ଼ ସେହିବର୍ଣ୍ଣ ତୁ ହେ ଶୁଣ ପାଣ୍ଡୁବସ୍ତି । ପଞ୍ଚାବନ ଭୁଜ ତାର ଦେହେ ଲାଗିଅଛି ॥ ନାନାବର୍ଣ୍ଣେ ଶରୀର ଯେ ତମ୍ବାବର୍ଣ୍ଣ ମୁଣ୍ଡ । କାଉବର୍ଣ୍ଣ କପୋଳ ଯେ ଅଗ୍ନିବର୍ଣ୍ଣ ଭୁଣ୍ଡ । ଯବ ପ୍ରମାଣ ଅଟଇ ସେ ପୋକ ଦେହଟି । ବର୍ତ୍ତୁଳ ଆକାର ସେ ଯେ ଶଙ୍ଖ ଚକ୍ର ଗୋଟି ॥ ବଜ୍ରତୁଣ୍ଡ ଅଗ୍ନିକ ଅଟେ ସେ ପୋକର ଅଙ୍ଗ । କାଣ୍ଡ ଖଣ୍ଡା ଶାବଳରେ ଦେହ ନୋହେ ଭଙ୍ଗ ॥ ନଖ ତୀକ୍ଷ୍ଣଦାଢ଼ ତାର ଦନ୍ତ ହୀରାପାଟି । ଦଶସପ୍ତ ବରଷେ କାଟଇ ଶିଳା ଗୋଟି ॥ ଗଣ୍ଡକୀପର୍ବତ ତଳେ କୋଳାହଳ ବନ । ଗଣ୍ଡକୀ ନଦୀରଧାର ବହେ ସବୁଦିନ ॥ ସେ ନଦୀ ବଢ଼ିଲେ ପୁଣି ବହଇ ସହର । ପର୍ବତ ଉପରେ ଯାଇଁ ବାଜଇ ଲହରୀ ॥ ଲହରୀ ବାଜନ୍ତେ ଯେ ବର୍ତ୍ତୁଳ ଶିଳା ଗଡ଼ । ଅନୁକ୍ଷଣେ ଖସିଯାଇଁ ସୋତଭିତରେ ପଡ଼ ॥ ସେ ନଦୀ ଭିତରେଣ ଯେ ଷଟେଭ୍ୟୁଣ ଅସି । ଶାଲଗ୍ରାମ ନାମେଣ ପାଟଣା ଅଛି ବସି ଶାଲଗ୍ରାମ ଲୋକମାନେ ଜଗିଥାନ୍ତି ଛଇ । ଶିଳାମାନ ଧରନ୍ତି ସେ ଜାଲମାନ ପାତି ॥ ଜାଲର ଯେ ବେଲପାଶେ ଯୋଉଥାନ୍ତି ହଳା । ତେଣୁକରି ବୋଲି ତାଙ୍କୁ ଶାଲଗ୍ରାମଶିଳା ॥ ତୁ ଯେ ପୁଚ୍ଛାକଲୁ ପାର୍ଥ ଶିଳା ତହୁ ବର୍ଣ୍ଣ । ସନ୍ତୋଷ ହୋଇଲୁଟି କ ଶୁଣି ବେଲି ବର୍ଣ୍ଣ ॥ ଯେବଣ ଶାସ୍ତ୍ର ଅଟଇ ଗତି ମୁକ୍ତିଦାତା । ଏକମନ ହୋଇ ତୁହି ଶୁଣ ମହାତ୍ମତା । ଏଥିଅନନ୍ତରେ ତୁ ହେ ଶୁଣ ବୀର ପାର୍ଥ । ଆମ୍ଭେ ଯେ ହୋଇଲୁଁ ହସ୍ତୁ ପାଷାଣ ପର୍ବତ ॥ ସନ୍ତୋଷେଣ ସ୍ତୁତି କଲେ ଦେବଲୋକଗଣ । ଆନନ୍ଦେ ଜଳରେ ବୁଡ଼ ହସିଲେ ଜ୍ଞାନ ॥ ସବୁଙ୍କର ଆନନ୍ଦରୁ ଉପୁଜିଲା ଯାହା । ସାବଧାନେ ଶୁଣ ପାର୍ଥ କହୁଦେବା ତାହା ॥ ସବୁଙ୍କର ଚିତ୍ତେ ଯେ ଆନନ୍ଦରସ ଯହୁଁ । ରୁଦ୍ରାକ୍ଷ ନାମେଣ ବୃକ୍ଷ ଉପୁଜିଲା ତହୁଁ ॥ ବ୍ରହ୍ମାଙ୍କର ଆନନ୍ଦ କହିବା ଅବା କିସ । ତାହାଙ୍କର ଲୋତକରୁ ଉପୁଜିଲା କୁଶ ॥ ବ୍ରହ୍ମାୟଣୀ ହୋଇ ଯେବେ ପରମସେନେହା । ଆବର ଜାତ ସ୍ୱର୍ଗଙ୍ଗା ଲୋତକରୁ ତାହା ॥ ଇନ୍ଦ୍ରର ଲୋତକ ଯେ ପଡ଼ିଲା ବୃକ୍ଷଗାତେ । ତହୁଁ ଉପୁଜିଲା ପାର୍ଥ ପୁଷ୍ପ ପାରିଜାତେ ॥ ଇନ୍ଦ୍ରାୟଣୀ ଆନନ୍ଦ ହୋଇଲା ଯହୁଁ କେଳି । ତାଙ୍କ ଲୋତକରୁ ଜାତ ହୋଇଲା ପୁଷ୍ପଲୀ ॥ ଅଦ୍ଭୁତ ଦେବତା ଯେ ଆନନ୍ଦ ଖେଳମୟେ । ସୂର୍ଯ୍ୟ ଯେ ଦେବତା ପୁଣ ତହୁଁ ଜାତ ହୁଏ ଏ ପୁଣି ଯେଉଁ କାଳରେ କ୍ଷୀରନଦୀରମଣ ॥ ପରମତତ୍ତ୍ୱରେ ପ୍ରଭୁ ତହରେ ଅପଣ ॥ ରଘୁନାଥ

ନନ୍ଦନ ସେ ଶ୍ରୀପଦ୍ମ ତା ନାମ । ସପ୍ତଦଶ ଅଧ୍ୟାୟେ ଯେ ଶ୍ଳୋକ ହେବ ଜାଣ ॥ ମୋହ ନାମରତ୍ନ ଗୀତା ଅଟଇ ଯେ ସାର । ଦୀନକୃଷ୍ଣ ଦାସ ଏହା ଭଣେ ନିରନ୍ତର

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀ ହରିଅର୍ଜ୍ଜୁନ ସମ୍ବାଦେ ନାମ ସପ୍ତଦଶୋଽଧ୍ୟାୟଃ ।

—o—

## ଅଷ୍ଟଦଶ ଅଧ୍ୟାୟ ।

ଅର୍ଜ୍ଜୁନ ଆଗରେ ଯେ କହନ୍ତି ବନମାଳୀ । ଏକମନେ ଶୁଣ ତୁ ହେ ଶାଳଗ୍ରାମ କେଳି ॥ ଇନ୍ଦ୍ରଦେବ ଲୋତକରୁ ଇନ୍ଦ୍ରଦେହ କାନ୍ତି । ଅଗ୍ନି ତହୁଁ ଅଗ୍ନିବାଣ ପବନୁ ମାଳତୀ ॥ ପୃଥ୍ୱୀ ଲୋତକରୁ ଜାତ ରମ୍ଭା ପଦ୍ମମାଳା । ଲକ୍ଷ୍ମୀ ଲୋତକରୁ ଜାତ ହୋଇଲା ଅର୍ପିଲା ॥ ସରସ୍ୱତୀ ଲୋତକରୁ ଜନମ ସେବତୀ । ଆଉ ଦେବତାଙ୍କ ତହୁଁ ନାନା ପୁଷ୍ପ ଜାତି ॥ ଏଥିଅନନ୍ତରେ ତୁ ହେ ଶୁଣ ଧୀରମତି । ଆମ୍ଭର ଲୋତକ ଯାଇଁ ପଡିଲା ଧରଣୀ ॥ ବ୍ରହ୍ମାଙ୍କର ଲୋତକ ଶିବଙ୍କର ଲୋତକ । ଏ ତିନି ଲୋତକେ ଜାତ ହୋଇଲା ବୃକ୍ଷେକ ॥ ସେ ବୃକ୍ଷମୂଳରେ ବ୍ରହ୍ମା ଡାଳେ ବିଷ୍ଣୁ ବାସ । ଅଗ୍ରଭାଗେ ସଦାଶିବ ପତ୍ରରେ ସୁଦେଶ ॥ ଦେଖିଣ ଆଶ୍ଚର୍ଯ୍ୟ ଯେ ହୋଇଲେ ଦେବଗଣ । ବୋଇଲେ ଏ ବୃକ୍ଷ ନାହିଁ ମର୍ତ୍ତ୍ୟଭୁବନେଣ ॥ ତ୍ରିବିଧ ତ୍ରିଗୁଣ ରୂପ କେଉଁଠାହିଁ ତିଶାଖା । ଏ ବୃକ୍ଷର ତୁଲେ ଆଉ କେହି ନାହିଁ ଲେଖା ॥ ଏ ବୃକ୍ଷର ମହିମା ଯେ କେ ପାରିବ କହି । ଦର୍ଶନ ମାତ୍ରେ ମାତ୍ର ହରଣ ଦୋଷ ଯାଇ ॥ ଅର୍ଜ୍ଜୁନ ବୋଇଲେ ପ୍ରଭୁ ତ୍ରିଗୁଣମା ଗୋସାଇଁ । କଥାଇ ପରମ ସତ୍ୟ ରଖିଲ କିପାଇଁ ॥ ତୁମ୍ଭ ଶାପେ ବୃନ୍ଦାବତୀ ହୋଇଅଛି କାଷ୍ଠ । କେମନ୍ତ ପ୍ରକାରେକ ସେ ହୋଇଲା ଯେ ଶ୍ରେଷ୍ଠ ॥ ଶ୍ରୀହରି ବୋଇଲେ ସେ ଯେ ଆମ୍ଭ ଶାପ ପାଇ । ପୃଥିବୀରେ ରହିଥିଲା କାଷ୍ଠରୂପ ହୋଇ ॥ ତେତିଶକୋଟିଦେବତା ବ୍ରହ୍ମା ବିଷ୍ଣୁ ଶିବ । ସମସ୍ତେ ତହିଁ ଦେଇଥିଲେ ତାହା ଉଦ୍ଭବ ॥ ବ୍ରହ୍ମା ବିଷ୍ଣୁ ଶିବ ଆମ୍ଭେ ତିନିଭାଇ ଥାଇ । ଅତିଅନ୍ତ ଆନନ୍ଦ ହୋଇଲୁ ତାକୁ ଚାହିଁ ॥ ଆନନ୍ଦରୁ ଉପୁଜିଲା ଯେ ଲୋତକମାନ । ବୃନ୍ଦାବତୀ ଉପରେ ସେ ପଡିଲା ଅର୍ଜ୍ଜୁନ ॥ ତେଣୁକରି ତୁଳସୀ ହୋଇଲା ତହୁଁ ଜାତ ॥ ତେତିଶକୋଟି ଦେବତା ଦେଖିଣ ଉପତ ॥ ପୁଷ୍ପର ମହିମା ତାର କେତେହେଁ କହିବା । ମଥାରେ ଘେନିଲେ ମହାପବିତ୍ର ହୋଇବା । ଏତେ ବୋଲି କରଯୋଡି ଦେବେ କଲେ ସ୍ତୁତି । ଅଦଠାରୁ ସ୍ୱାମୀ ମା ଗୋ ଉଚ୍ଚର ତୁ ପୃଥ୍ୱୀ ॥ ତୋହର ମୂଳରେ ଆମ୍ଭେ ହୋଇରୁ ବନ୍ଦେକ । ତେତିଶକୋଟି ଦେବତା ଭିଡିଥିଲେ ଲୋକ ॥ ଯେ ତୋର ପୁଷ୍ପପତ୍ର ଘେନିବ ଭଜିବ ॥ କୋଟି ଜନ୍ମର ପାତକ ପଳାଇବ ଡରେ । ଏତେ ବୋଲି ବୃକ୍ଷକୁ ଯେ ପ୍ରଦକ୍ଷିଣ କଲେ । କରପତ୍ର ମୋଡିଣ ପଛକୁ ଫେରିଗଲେ ॥ ପୁଣ ପାଏ ପଡିଣ ବୋଇଲେ ଦେବଗଣ । ଆମ୍ଭର ଗୁହାରି ମା ଗୋ ସାବଧାନେ ଶୁଣ ॥ ତେଣୁକରି ତୁମ୍ଭପାଦେ କରୁଅଛୁ ସେବା । ଏ ପୁଷ୍ପର ବାସନା ଦ୍ୟାହାକୁ ଅଗେ ଦେବା ॥

ଦେବତାଙ୍କ ବଚନେ ତୁଳସୀ ମନେ ତୋଷ । ବୋଇଲେ ହେ କହ୍ନଦେବା ଏଥିର ସନ୍ଦେଶ ॥ ଗୋଲକର ଗୋପୀ ଅମ୍ଭେ ପୁଷ୍ପରୂପେ ଜାତ । ଅଙ୍ଗଠାରୁ ମଞ୍ଚପୁରେ ହୋଇଲୁ ତଥ୍ୟତ ॥ ଗୋପୀଙ୍କର ଅଙ୍ଗରେ ଯେ ପୁଷ୍ପଜାତ ହୋଇ । ଏ ପୁଷ୍ପର ବାସନା କୃଷ୍ଣଙ୍କୁ ଆଗେ ଦେଇ ॥ କୃଷ୍ଣର ମଥାରେ ନେଇ ପୁଷ୍ପ ଆଗେ ଦେବ । ଅବଶେଷ ରହିଲେ ଯେ ପଛେ ତୁମ୍ଭେ ନେବ ॥ ଇନ୍ଦ୍ରଦ୍ୟୁମ୍ନ ଲୋକେ କାମନାରେ ବଶ । କୃଷ୍ଣଙ୍କୁ ନ ଦେଲେ କେହି ନ ଘେନିବ ପୁଷ୍ପ ॥ କେଉଁକାଳେ ହୃଦେ ହେବେ ଶ୍ରୀମଣ୍ଟିରମଣ । ଦାରୁବ୍ରହ୍ମରୂପ ହୋଇବେ ଜଗନ୍ନାଥ ଜାଣ ॥ ଏ ତୁଳସୀ ମାଣିକ୍ୟ ରୂପରେ ହେବ ଜନ୍ମ । ସୁଦର୍ଶନ ପିତା ତାର ଅବଶ୍ୟ ପ୍ରମାଣ ॥ ମୋହ ନାମରତ୍ନଗୀତା ଅମୀୟ ଯେ ରସ । ଦୀନକୃଷ୍ଣ ଦାସ କରେ ଭାବରେ ପ୍ରକାଶ ॥

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀ ହରିଅର୍ଜ୍ଜୁନ ସମ୍ବାଦେ ନାମ
ଅଷ୍ଟତ୍ରିଂଶୋଽଧ୍ୟାୟଃ ।

---

## ଊନଚାଳିଶ ଅଧ୍ୟାୟ ।

### ଶ୍ରୀ ଭଗବାନ୍ ବାଚ ।

ଅର୍ଜ୍ଜୁନ ଆଗରେ ଯେ କହନ୍ତି ଭାବଗ୍ରାହୀ । ଏକମନେ ଶୁଣ ତୁ ହୋ ଯୁଧିଷ୍ଠିର ଭାଇ ॥ ଆଗେ ଶ୍ରୀହରିଙ୍କି ଦେଇ ପଛେ ଘେନ ତୁମ୍ଭେ । ଜ୍ଞାନଦୃଷ୍ଟି ନୋହିବନ୍ତି କହୁଅଛୁଁ ଅମ୍ଭେ ॥ ପ୍ରଭୁଙ୍କୁ ନ ଦେଇ ଆଗେ ଯେ ଘେନିବ ଏହା । ସେ ପ୍ରାଣୀ ହୋଇବ ଭ୍ରଷ୍ଟ କୃଷ୍ଣରେ ଦୋଷିହା ॥ ପଛେ ମୋତେ ନ ବାଛିବ କହୁଅଛୁ ଶୁଣ । କୃଷ୍ଣଙ୍କୁ ନ ଦେଲେ ଯେ ସନ୍ତୋଷ ନୋହି ପୁଣ ॥ ତୁଳସୀଙ୍କ ବଚନ ଦେବତାମାନେ ଶୁଣି । ମହାଭୟ କରିଣ ପୁଚ୍ଛିଲେ ଅସି ପୁଣି ॥ ଏ ପୁଷ୍ପ ବାସନାକୁ ଯେ ଯୋଗ୍ୟ ଅମ୍ଭେ ନୋହି । କୃଷ୍ଣଙ୍କୁ ପ୍ରଦାନ ହେବ ନ ଘେନିବା କେହି ॥ ମଞ୍ଚଭୁବନରେ ଜାତ ହୋଇଲ ଯେ ତୁମ୍ଭେ । କେଉଁଠାରେ କୃଷ୍ଣଙ୍କୁ ଖୋଜିବା ପୁଣ ଅମ୍ଭେ ॥ ଅନନ୍ତ ମୂରତି କୃଷ୍ଣ ଅନ୍ତ ଯାର ନାହିଁ । ଏ ପୁଷ୍ପ କେମନ୍ତ ତାଙ୍କୁ ଦେବାଟି ଗୋସାଇଁ ॥ ଦେବତାଙ୍କ ବଚନେ ବୋଇଲେ ତୁଳସୀ । ଅଶେଷ ଭୁବନେ କୃଷ୍ଣ ସବୁଠାରେ ବସି ॥ ଦେଖି ନ ପାଇଲେ ହୃଦପଦ୍ମେ ଥିବ ଜାଗି । ମାନସିକେ ତାହାଙ୍କୁ ଯେ ପୁଷ୍ପକର ଲାଗି ॥ ଯେଉଁଠାରେ ଦେଲେ ସେ ପାଇବ ସେଇଠାଇଁ । ମାନସିକେ ଠାକୁରଙ୍କୁ ଯେଉଁ ପୁଷ୍ପ ଦେଇ ॥ ଏଥକୁ ଦେବତାମାନେ ନ ଭାଳିବ ତୁମ୍ଭେ । କୃଷ୍ଣର ବଲ୍ଲଭା ଯେ ତୁଳସୀଦେବୀ ଅମ୍ଭେ ॥ ଏମନ୍ତ ବୋଲିଣ ଆଜ୍ଞା ଦେଲେ ଠାକୁରାଣୀ । ସନ୍ତୋଷ ହୋଇଲେ ଯେ ଦେବତାମାନେ ଶୁଣି ॥ ପୁଣିହିଁ ବୋଇଲେ ତୁମ୍ଭେ ଯାଅ ଏହିକ୍ଷଣ । ମଞ୍ଚପୁରେ ଯେତେ ପୁଷ୍ପ ଖୋଜିକରି ଅଣ ॥ ତୁଳସୀଙ୍କ ବଚନ ଯେ ଦେବତା ଶୁଣିଲେ । ସବୁ ପୁଷ୍ପ ତୋଳିକରି ସମ୍ମୁଖୁ ଆସିଲେ ॥ ଦେଖିକରି ସନ୍ତୋଷ ହୋଇଲେ ମହାମାୟି । ବୋଇଲେ ଏ ପୁଷ୍ପ ତଥ

ଏକତ୍ରିଶ ଅଧ୍ୟାୟ ।

ଅର୍ଜୁନ ଉବାଚ ।

ଅର୍ଜୁନ କହନ୍ତି ଅହେ ପ୍ରଭୁ ହୃଷୀକେଶ । ଦୟା କରି ପୂର୍ଣ୍ଣକର ମୋର ଅଭିଳାଷ ॥ ତୁମ୍ଭର ମହିମା ଏବେ କହ ନଦବଲା । ଏକା ଦେହ ତୁମ୍ଭର ଯେ କେତେ ଅଂଶ କଲା ॥ ଶ୍ରୀହରି ବୋଇଲେ ଯାହା ପୁଚ୍ଛାକଲୁ ମୋତେ । ଏକଥା ଗୋଷ୍ଠି ଯେ ଯେତେ କହିଦେବା ତୋତେ ॥ ଆମ୍ଭର ମହିମା ପାର୍ଥ ଅଟଇ ଅନନ୍ତ । ଅନନ୍ତ ମହିମା କଥା କେ କହିବ ଅନ୍ତ ॥ ଅତ ମୂଳ ବୃକ୍ଷ ଯେସନେ ଅବୁଦନେ ଥାଇ । ଫଳମାନେ ବ୍ରହ୍ମାଣ୍ଡରେ ଜାତ ହୋନ୍ତି ଯାଇଁ ॥ ସେହିଭାବେ ମୂଳ ବୃକ୍ଷ ଅଟୁଁ ଅମ୍ଭେ ପାର୍ଥ । କୋଟି କୋଟି କଲା ଆମ୍ଭ ଶ୍ରୀଅଙ୍ଗରୁ ଜାତ ॥ ସପତ ସମୁଦ୍ର ଅନ୍ତ କେ ପାରିବ କଳି । ତହୁଁ ଜାତ ହୋଇଲା ଯେ ତରଙ୍ଗ ଲହରୀ ॥ ସହଜେ ବାଞ୍ଛ ତାହାର ଉଦେ ହୋଇ ବଶେ । ତହୁଁ ଜାତ ହୋଇ ପୁଣି ତହିଁ ଯାଇଁ ମିଶେ ॥ ଦେହରେ ଯେସନେ ମଳି ଲଟିଥାଇ ପାର୍ଥ ॥ ଧୋଇଦେଲେ ଅଭୁ କେବଳ ନୁହଇ ବ ଜାତ ॥ ସେହିଭାବେ ଆମ୍ଭର ଯେ ଅଂଶକଳାମାନ । ଅତଯାତ ହେଉଛନ୍ତି ଶୁଣ ତୁ ଅର୍ଜୁନ ॥ ଛତ୍ରିସ୍ଥଳ ମଣ୍ଡଳ ଯେ ସ୍ୱାହାପମଣ୍ଡଳ । ଅନନ୍ତ ଶିର ଉପରେ ସ୍ୱଧାରୂପ୍ତ ଖେଳ ॥ ସ୍ୱଧ୍ୱକା ଅଂଶରୁ ଜାତ ଷୋଡ଼ଶ ସୁନ୍ଦରୀ । ଷୋଡ଼ଶ ଅଂଶରୁ ଜାତ ବୃନ୍ଦାବତୀନାରୀ ॥ ବୃନ୍ଦାବତୀ ଅଂଶରୁ ତୁଳସୀର ଜନମ । ତୋ ଅଗେ କହିଲୁଁ ପାର୍ଥ କଥାର ମରମ ॥ ଛତ୍ରିକାର ଅଙ୍ଗ ଆମ୍ଭେ ହୋଇଅଛୁଁ ଜାତ । ଆମ୍ଭ ଉଦରୁ ଜାତ ଯେ ମଧୁଦୈତ୍ୟ ସୁତ ॥ ଏବେ ଅଂଶ ଧରିଣ ହରିଲୁଁ ବୃନ୍ଦାବତୀ । ଆଉ ଅଂଶ କଲୁଁ ବସ୍ତୁ ପାଷାଣ ମୂରତି ॥ ଏବେ ଯେଉଁ ଅଂଶ ଆମ୍ଭ ଅଙ୍ଗେ ଅଛୁ ପାର୍ଥ । କେତେ କୋଟି ବ୍ରହ୍ମାଣ୍ଡ ହୋଇବ ଏଥୁଁ ଜାତ ॥ ଅର୍ଜୁନ ବୋଇଲେ ତୁମ୍ଭେ ଶୁଣ ଲକ୍ଷ୍ମୀସାଇଁ । ଶ୍ରୀମୁଖ ବଚନରୁ ପରତେ ମୋର ନାହିଁ ॥ ପ୍ରତି ପ୍ରତି କରି ତାହା କହ ହେ ଶ୍ରୀହରି । ଯେଉଁପରି ବୁଝିବି ମୁଁ ବିଧିମତ କରି ॥ ଶ୍ରୀହରି ବୋଇଲେ ତୁ ହୋ ଶୁଣ ବୀରମଣି । ତୁଳସୀର ସେବା ଏକା ଜାଣନ୍ତି ରୁଦ୍ରାଣୀ ॥ ଆଉମାନେ ଆମ୍ଭର ଯେତେକ ମହାଦେଇ । ତୁଳସୀ ଭାବନା ମୁଖେ ନ ଜାଣନ୍ତି କେହୁ ॥ ଏଥୁ ଅନନ୍ତରେ ତୁ ହୋ ଶୁଣ ଫାଲଗୁନି । ଦ୍ୱାରିକାରୁ ଅଇଲେ ନାରଦମହାମୁନି ॥ ଦଣ୍ଡ କମଣ୍ଡଳୁ ଯେ ଅବର ଛତା ଯେତେ । କାଖତଳେ ଯାହିଛନ୍ତି ବଳି ଯେ ଧୋବତ ॥ ସଜ ଯେ ଦ୍ରବ୍ୟ ଧୋତି କଟିତଟରେ ସାଜେ । ରୁଦ୍ରାକ୍ଷ ତୁଳସୀମାଳା ହୃଦରେ ବିରାଜେ ॥ କଣ୍ଠରେ କୁଣ୍ଡଳ ଅଷ୍ଟାଙ୍ଗଯୋଗରେ ଚିତା । ଦ୍ୱାଦଶ ଭାବରେ ଗୋପୀ ଚନ୍ଦନ ଯେ ଚିତା ॥ ଏସନକ ଦ୍ରବ୍ୟ ବେଶ ହୋଇ ମହାମୁନି । ଦ୍ୱାରିକାରେ ପ୍ରବେଶ ହୋଇଲେ ତତକ୍ଷଣି ॥ ସତ୍ୟଭାମା ପୁରେ ଅସି ମିଳି ବ୍ରହ୍ମାସୁତ । ବିଶ୍ୱାସ କରାଇ ମୁନି ବସାଇଲେ ତୁରିତ ॥ ନାରଦ ବୋଇଲେ ଶୁଣ ସତ୍ରାଜିତବଳି । ତୋହପାଇ ନାନାସୂତ୍ର ଅଣିଅଛୁଁ ତୋଳି ॥ ତୁରିତ କରାଇ ପଢନ୍ତ

ତସ୍ତଇବା ଦେବ । ଦକ୍ଷିଣା ଆମ୍ଭଙ୍କ ଏବେ କେତେ ଦେବୁ କହ ॥ ସତ୍ୟଭାମା ବୋଇଲେ ମାଗିବ ତୁମ୍ଭେ ଯାହା । ସତ୍ୟ କରୁଅଛୁ ମୁଁ ଅବଶ୍ୟ ଦେବି ତାହା ॥ ଅଷ୍ଟରତ୍ନଦକ୍ଷିଣା ଦେବଇଁ ଅନୁପମ । ଶୁଣିକରି ନାରଦ ହୋଇଲେ ତମ ତମ ॥ ବୋଇଲେ ଗୋ ସତ୍ୟଭାମା ଅଣ୍ଟାଦେଲ ଯାହା । ଧନରତ୍ନ ନେଇଁ ଆମ୍ଭେ କି କରିବୁଁ ତାହା ॥ ଏତେ ବୋଲି ତୁଳସୀ ଯେ ସ୍ତମ୍ଭ ଗ୍ରମ ବାଣୀ । ପରମ ଭକ୍ତ୍ୟରେ ହଜସ୍ତେ ଶ୍ରୀ ବଂଶୀପାଣି ॥ ସେ ଶ୍ୟାମସୁନ୍ଦର ମୂର୍ତ୍ତି ଅନନ୍ତ ଅଟଇ । ତାହାକୁ ଯେ ଭାବୁଥାନ୍ତି ପ୍ରଭୁ ଭବଗ୍ରାହୀ ॥ ମୋର ନାମରତ୍ନଗୀତା ଅଟଇ ଯେ ସାର । ଦୀନକୃଷ୍ଣ ଦାସ ଏହା ହୃଦରେ ହିଅର ॥

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀ ହରି ଅର୍ଜୁନ ସମ୍ବାଦେ ନାମ
ଏକଚ୍ଲିଶୋଽଧ୍ୟାୟଃ ।

---

## ବୟାଳିଶ ଅଧ୍ୟାୟ ।

### ଶ୍ରୀକୃଷ୍ଣ ଉବାଚ ॥

ଅର୍ଜୁନ ଆଗରେ ଯେ କହନ୍ତି ଚକ୍ରପାଣି । ଶୁଣ ଏକମନେ ତୁମ୍ଭେ ହିବସ୍ତ ଯେ ପୁଣି ॥ ବ୍ରହ୍ମାଙ୍କ ନନ୍ଦନ ସେ ନାରଦ ବ୍ରହ୍ମଚାରୀ । ବୋଇଲେ ବିଷ୍ଣୁଙ୍କ ତୋର ନେଇଯିବି ଧରି ॥ କହୁଁ କହୁଁ ମୋହ ରୂପ ହେଲେ ବ୍ରହ୍ମଋଷି । ଆମ୍ଭ ଦେଖନ୍ତେ ଧରି ଆସିଲେ ଆକର୍ଷି ॥ ବୋଇଲେ ତୋହର ନାରୀ ସତ୍ୟବ୍ରତ କଲା । ବନ୍ଧୁଣ ଭମନ୍ତ୍ର ସିନା ଆମ୍ଭଙ୍କୁ ସେ ଦେଲା ॥ କାହାଆଗେ ଗୁହାରି କରିବ ପଦ୍ମଅକ୍ଷି । ତିନିପୁରେ କେହୁ ତୋତେ ନ ପାରିବେ ରକ୍ଷି ॥ ଏତେ ବୋଲି ହସ୍ତ ଧରି ତୋଳିଣ ସେ ସ୍ୱର୍ଗେ । ବିଳମ୍ବ ନ କରି ଆମ୍ଭେ ଗଲୁଁ ତାଙ୍କ ସଙ୍ଗେ ॥ ପଦ୍ମକର ଧରିଣ ସତ୍ୱରେ ହିଙ୍କେ କଲେ । ନବକୁ ବାହାର ହୋଇ କିଛି ଦୂର ଗଲେ ॥ ଏମନ୍ତ ସମୟେ ସତ୍ୟଭାମା ଗଲେ ଧାଇଁ । ନାରଦ ମୁନିଙ୍କ ଆଗେ ଉଗାଳିଥିଲ ଯାଇଁ । ବୋଇଲେ ଶୁଣିମା ତୁମ୍ଭେ ବ୍ରହ୍ମାଙ୍କ କୁମର । କଥା ନ ବୁଝିଣ ବଡ଼ ଅନ୍ୟାୟ ତ କର ॥ ମୁହିଁ ତୁମ୍ଭଙ୍କୁ ବଚନ ନ ପାରିବ କରି । କାହିଁପାଇଁ ସ୍ୱାମୀଙ୍କୁ ମୋ ନେଉଅଛ ଧରି ॥ ତାହାଙ୍କର ସମାନେ ବନ୍ଧୁଣ ଦେବା ଗଢ଼ । ବିଳମ୍ବ ନ କରି ମୋ ପ୍ରଭୁଙ୍କ ହସ୍ତ ଛାଡ଼ ॥ ନାରଦ ବୋଇଲେ ତୁ ଗୋ ସତ୍ୟକର ଏବେ । ଜଗନ୍ନାଥ ସମାନେ ଦକ୍ଷିଣା ଦେବୁ ଯେବେ ॥ ସତ୍ୟଭାମା ବୋଇଲେ ମୋହର ସତ୍ୟ ସତ୍ୟ । ଏକଥାକୁ ନାସ୍ତି କଲେ ନାଶ ଯିବ ବ୍ରତ ॥ ଶୁଣିକରି ବାହୁଡ଼ି ଆଇଲେ ମହାମୁନି । ଆସନରେ ବସିଲେ ତରଜୁ କରେ ଘେନି ॥ ସତ୍ୟଭାମା ମୁଖ ଚାହିଁ ଅଣ୍ଟାଦେଲେ ମୁନି । ଜଗନ୍ନାଥ ସମାନେ ବନ୍ଧୁଣ ଦିଅ ଆଣି ॥ ଏତେ ବୋଲି ଦେଇଖମ୍ଭ ପୋତାଇଲେ ତହିଁ । ମଧ୍ୟରେ ସୁବର୍ଣ୍ଣ ସେଣି ଚଢ଼ାଇଲେ ନେଇ ॥ ମଣି ଯେ ମାଣିକ୍ୟ ହୀରା ମାଳା ଯେ ଯୋଡ଼ିଲା । ନାନାବର୍ଣ୍ଣେ କମ ଯେ ହିଦଷ ରତ୍ନମାଳା ॥ ଲକ୍ଷେମାଢ଼

ସୁବର୍ଣ୍ଣ ତହିଁରେ ଆଣି ଦେଇ । ଅମୃତୁଲେ ରତ୍ନ ଯେ ନୋହିଲା କେହି ସରି ॥ ଦେହ ଷଳ ଅଳଙ୍କାର ମଣୋହି ଯୋଗାଡ଼ । ତାହା ନେଇ ଦେଲା ତହିଁ କରି ମନେ ଦୃଢ଼ ॥ କୌଣସି ପ୍ରକାରେ ସମ ନୋହିଲା ତରାଜୁ । ଦେଖି ସତ୍ୟଭାମା ଯେ ପାଇଲେ ମହାଲାଜ ॥ ପ୍ରସନ୍ନବଦନେ ଅମ୍ଭେ ଆଜ୍ଞା ଦେଲୁଁ ତାଙ୍କୁ । ବେଗେ ଯେ ଭଣ୍ଡାର ବସ୍ତୁ ଆଣ ଏଠାକୁ ॥ ଆଜ୍ଞା ପାଇ ସତ୍ୟଭାମା ଧାଇଁକାରେ ଗଲେ । ଭଣ୍ଡାର ସହିତେ ଆଣି ତରାଜୁରେ ଦେଲେ ॥ ଦ୍ୱାରିକା ଭୁବନ ଲୋକ ଚାହିଁବା ହୋଇଲେ । କେବେହେଁ ତରାଜୁ ଆଉ ତୁଲ ଯେ ନୋହିଲେ ॥ ବୋଇଲେ ଶ୍ରୀକୃଷ୍ଣଙ୍କୁ ଯେ ନେଉଛନ୍ତି ମୁନି । ସମସ୍ତେହେଁ ବ୍ୟାକୁଳ ବାରୁ ଧନମାନ ଘେନି ॥ ସାତ୍ୟକି ଅକ୍ରୂର ଯେ ଉଦ୍ଧବ ଉଗ୍ରସେନ । ଆନ ବଡ଼ମାନେ ସବୁ ନେଉଛନ୍ତି ଧନ ॥ କେବେହେଁ ତୁଲ ଆଉ ନୋହିଲାକ ତରାଜୁ । ଦେଖିକରି ସୁନ୍ଦରୀ ପାଇଲେ ମହାଲାଜ ॥ ଏକରୁ ଅନେକ ତହିଁ ମନେ ମନେ ଭାଳି । ସତ୍ୟଭାମା ମୁଖ ଚାହିଁ ଦେଉଛନ୍ତି ଗାଳି ॥ ବୋଇଲେ ମୁନିଙ୍କ ସଙ୍ଗେ ସତ୍ୟକଲା ଯେବେ । ଏହାଯୋଗେ ଅନର୍ଥ ପଡ଼ିଲା ଆସି ଏବେ ॥ ବୋଇଲେ ଏ ମୁନିଙ୍କି କି ଉପାୟ କରିବା । କୋପ ଜାତ କଲେ ଅମ୍ଭେ ସମସ୍ତେ ମରିବା ॥ ଯେଉଁକାଳେ ଜାତ ହେବେ ଶ୍ରୀମଣିରମଣ । ସେକାଳେ ମୁନିଙ୍କ ଯେ ଆରମ୍ଭ ମହାପଣ ॥ ମଣିଭଦ୍ର ପଞ୍ଚତରେ ପ୍ରଭୁ ପଦ୍ମନାଭ । ସପ୍ତଦଶ ପଦ୍ମ ତହିଁ ନୋହିବଟି ଲାଭ । ମୋହ ନାମରତ୍ନଗୀତା ମନେ କରି ରଖ । ଦୀନକୃଷ୍ଣ ଦାସ ବୋଲେ ଭକ୍ତଜଣ ଶ୍ରୀମୁଖ ॥

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀ ହରି ଅର୍ଜୁନ ସମ୍ବାଦେ ନାମ
ବୟାଳିଶୋଽଧ୍ୟାୟଃ ।

---

## ତେୟାଳିଶ ଅଧ୍ୟାୟ ।

### ଶ୍ରୀକୃଷ୍ଣ ଉବାଚ ।

ଅର୍ଜୁନ ଆଗରେ ଯେ କହନ୍ତି ଭଗବାନ । ଏକମନେ ଶୁଣ ଏବେ ପାଣ୍ଡୁର ନନ୍ଦନ ॥ ଶ୍ରୀକୃଷ୍ଣ ଯେ ଗଲେ ଅମ୍ଭେ ହୋଇବା ଭରେଖ । ସତ୍ୟଭାମା ଯୋଗୁଁ ଯେ ପାଇଲୁ ଏତେ ଦୁଃଖ ॥ ଏ ବଚନ ଶୁଣିଣ ବୋଇଲେ ମହାଋଷି । ଅନ୍ୟ ଅନ୍ୟ ହୋଇ କିମ୍ପା ଭାଳୁଅଛ ବସି ॥ ତରାଜୁରେ ତୁଲ କରି ନ ଦେଲେ ଯେ ଧନ । ଅବଶ୍ୟ ମୁଁ ଧରି ଘେନିଯିବି ଭଗବାନ ॥ ସମସ୍ତେ ବୋଇଲେ ଯେବେ ନେବ ତୁମ୍ଭେ ହରି । କଳହାରେ ଅମ୍ଭେମାନେ ନେରୁଁ ଯେ ଉଦ୍ଧାରି ॥ ତୁମ୍ଭେ ହେ ଏଥିରୁ ଯେବେ କରିବଟି ବଳ । ତେଣ୍ଟି କାଟି ମରିବୁଁ ଯେ ଯୁବତୀ ସକଳ ॥ ସତ୍ୟଭାମା ବୋଇଲେ ମୁନିଙ୍କ ମୁଖ ଚାହିଁ । ଦଣ୍ଡେ 'ମାତ୍ର ଏକା ତୁମ୍ଭେ ଥାଅ ତୁନି ହୋଇ ॥ ତୁମ୍ଭଙ୍କୁ ବୋଧିଣ ଯେବେ ନ ପାରିବୁଁ ମୁନି । ତେତେବେଳେ ଯିବ ପଛେ ଶ୍ରୀକୃଷ୍ଣଙ୍କୁ ଘେନି ॥ ପ୍ରବୋଧ ବଚନ କହି ଶ୍ରୀକୃଷ୍ଣଙ୍କ ଆଗେ । ରୁକ୍ମିଣୀପୁରକୁ ସତ୍ୟଭାମା ଗଲେ ବେଗେ ॥

ମଥାର ଉପରେ ନେଇ ବେଣ୍ଟକର ଯୋଡ଼ା । ସ୍ତୁତି କରି ଶୋଇଲେ ଯେ ବେଣ୍ଟ ପାଦେ ପଡ଼ି ॥ ବୋଇଲେ ହେ ଠାକୁରାଣୀ ତୁମ୍ଭେ ଅଟ ପାଟ୍ଟ । ମୋତେ ଆସି ପଡ଼ିଲା ଯେ ଦୁଃସହ ସଙ୍କଟ ॥ ନିଜ ପ୍ରଭୁ ଅମ୍ଭର ଯେ ଅଟନ୍ତି ଶ୍ରୀହରି । ବନ୍ଧୁଣ ଇମନ୍ତେ ମୁଣ୍ଡି ନେଉଛନ୍ତି ଧରି ॥ ଦ୍ୱାରିକାନଗରୁ ସବୁ ବହି ନେଲେ ଧନ । ଦେହସଜ ଆଦ କରି ଯେତେ ଥିଲା ସ୍ୱର୍ଣ୍ଣ ॥ ଭଣ୍ଡାର ସହିତେ ନେଇ ତସ୍କରରେ ଦର । ଠାକୁରଙ୍କ ସହିତେ ନୋହିଲେ କେହି ସରି ॥ ଦ୍ୱାରିକା ଭୁବନରୁ ସରିଲା ସବୁ ସୁଖ । ଧନ ଦ୍ରବ୍ୟ ଦେଇଣ ପାଇଲୁ ନାନାଦୁଃଖ ॥ କେବଳ ମାତ୍ରକ କଥା ତୁମ୍ଭଠାରେ ଅଛୁ । ରୁକ୍ମିଣୀ ବୋଇଲେ ତୁମ୍ଭେ ନ ଜାଣ ଗୋ କିଛୁ ॥ ଈଶ୍ୱକାର ପୁରୁଷ ସେ ବ୍ରହ୍ମାଣ୍ଡ-ଠାକୁର । ତାଙ୍କ ତୁଲେ ଧନକୁ ବପାଁଇ ଲକ୍ଷ କର ॥ ସେହି ତାଙ୍କୁ ଏକା ଲକ୍ଷ ଆଉ ଲକ୍ଷ ନାହିଁ । ଯେତେ ଧନ ଦେଲେ ତାଙ୍କ ତୁଲେ ଲକ୍ଷ କାହିଁ ॥ ରୁକ୍ମିଣୀ ବଚନ ଶୁଣି ସତ୍ୟଭାମା ଭାଳି । ଶୋକଭରେ କାନ୍ଦିଲେ ସେ ଶଙ୍ଖାଙ୍କତବାଳୀ ! ରୁକ୍ମିଣୀ ବୋଇଲେ ତୁମ୍ଭେ ନ କର ଗୋ କୋହ । ତୁଳସୀର ସେବା ସବୁ ଦର୍ଶେମାଷ ରହ ॥ ଏତେ ବୋଲି ରୁକ୍ମିଣୀ ତୁଳସୀ ସେବା କଲେ । ପ୍ରଦକ୍ଷିଣ କରି ପନ୍ତୁ ଗୋଷ୍ଟିଏ ତେଲିଲେ ॥ ଯେଣୁ ସେ ଅଟନ୍ତି ଗ୍ରସ୍ତୁ ଇତ୍ୟର ସୁନ୍ଦରୀ । ସେ ସୁଧା ମୋହନ ରୂପ ସେହି ବଶ କରି ॥ ମାଣିକ ରୂପରେ ଯେ ହୋଇବ ସେହି ଜନ୍ମ । ତେଣୁ ବଶ କରିବ ସେ ପୁରୁଷଉତ୍ତମ ॥ ମୋହ ନାମରତ୍ନଗୀତା ଅଟେ ମୃଦୁରସ । ଦୀନକୃଷ୍ଣ ଦାସ କରେ ଭାବରେ ପ୍ରକାଶ ॥

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀ ହରି ଅର୍ଜ୍ଜୁନ ସମ୍ବାଦେ ନାମ ତ୍ରୟାଲିଂଶୋଽଧ୍ୟାୟଃ ।

---

## ଚୌରାଳିଶ ଅଧ୍ୟାୟ ।

ଶ୍ରୀ ଭଗବାନୁବାଚ ।

ଅର୍ଜ୍ଜୁନ ଆଗରେ ଯେ କହନ୍ତି ଭଗବାନ ॥ ଏକମନେ ଶୁଣ ତୁ ହୋ ଯୁଧିଷ୍ଠି ଇଶାନ । ସୁବର୍ଣ୍ଣପାତ୍ରେ ଭରି ଯୋଡ଼ିଗଲେ ଝରେ । ପ୍ରବେଶ ହୋଇଲେ ଯାଇଁ ମୁନିଙ୍କ ସମ୍ମୁଖରେ ॥ ହସ ହସ ହୋଇଣ ବୋଇଲେ ପାଟ୍ଟରାଣୀ । ସତେହେଁ କି ମୁନି ତୁମ୍ଭେ ନେବ ରତ୍ନପାଣି ॥ ଅଧିକ ତୁମ୍ଭଙ୍କ ଆଉ କି କହିବ କଥା । କାହିଁ ପାଇଁ ବଳେ ଧରି ନେବ ଆମ୍ଭ ଭର୍ତ୍ତା ॥ ରୁକ୍ମିଣୀ ବଚନେ ଯେ ନାରଦ କଲେ କ୍ରୋଧ । ବୋଇଲେ କି ଦେଇ ମୋତେ କରିବଟି ବୋଧ ॥ ପ୍ରଭୁପାଇଁ ଛାଣି ହୋଇ କହିଲୁ ଯେ କଥା । ପାରିଲେ ତୁ ଧନ ଦେଇ ନିଅ ତୁମ୍ଭ ଭର୍ତ୍ତା ॥ କିସ ଦ୍ରବ୍ୟ ଅଛିଅଛି ତସ୍କରରେ ଦର । ଜଗନ୍ନାଥ ତୁଲେ ସବୁ ସରିସମ କର ॥ ରୁକ୍ମିଣୀ ବୋଇଲେ ଧନ ଅଛିଅଛି ମୁହିଁ । ତସ୍କରରୁ ସବୁ ଧନ ପକାଅ କଢ଼ାଇ ॥ ଶୁଣିକରି ନାରଦ ଉଠିଲେ କୋପରେ । ତସ୍କରରୁ ଧନ କାଢ଼ି ପକାଇଲେ ତଳେ ॥

ରୁକ୍ମିଣୀଙ୍କ ବୋଇଲେ ଗୋ ଆଣିଅଛ ଯାହା । ସୁପତ ପ୍ରକାରେ ହର୍ଷାଁ ରଖିଅଛ ତାହା ॥ ଷ ଷ ଦ୍ରବ୍ୟ ଆଣିଅଛ ତକ୍ସଜରେ ଦଅ । ତୁଲ ଯେବେ ହୋଇବ ତୋ ଜଗନ୍ନାଥ ଭଅ ॥ ଶୁଣିକରି ରୁକ୍ମିଣୀ ସନ୍ତୋଷ ମନ ହେଲେ । ତୁଳସୀର ଦଳ ନେଇ ତସ୍କଳରେ ଦେଲେ ॥ ହୋଇଲା ହୋଇଲା ବୋଲି ଶୁଭିଲାକ ଗୋଳ । ଦ୍ୱାରିକାଭୁବନେ ହରି ଶବଦେ ରହିଲ ॥ ଶୁଣିକରି ଆନନ୍ଦ ହୋଇଲେ ମୁନି ମୁଖ । ନାରଦ ଯେ ରୁକ୍ମିଣୀଙ୍କ କଲେ ଧନ୍ୟ ଧନ୍ୟ ॥ ବୋଇଲେ ହୋ ରୁକ୍ମିଣୀ ତୋ ମହିମା ଦୁର୍ଲ୍ଲଭ । ଏ ପୁଷ୍ପ ସଙ୍ଗତେ ସରି କଲୁ ପଦ୍ମନାଭ ॥ ତୁଳସୀ ତରସ୍ତ ତଲେ ଏଡ଼େ ବଡ଼ ଭାବ । ତସ୍କଳରେ ତୁଲ କଲୁ ପ୍ରଭୁ ବାସୁଦେବ ॥ ହସ୍ତରେ ଯେତେଣ ଯେ ବୋଇଲେ ବ୍ରହ୍ମସୁଣୀ । ବ୍ରହ୍ମାଣ୍ଡରେ ଏ ବୃକ୍ଷକୁ ନୋହେ କେହି ସରି ॥ ଜଗନ୍ନାଥ ସମାନରେ ଏ ହୋଇଲେ ସମ । ତେଣୁକରି ଏହାର ତୁଳସୀ ବୋଲି ନାମ ॥ ଠାକୁରଙ୍କ ସଙ୍ଗତରେ ସରି ହେଲେ ସେହି । ତୁଳସୀ ବୋଲିଣ ଆଉ ନ ବୋଲିବେ କେହି ॥ ତୁଲରେ ହୋଇଲା ସରି ନାମ ତାର ତୁଳ । ତୁଳସୀ ବୋଲିଣ ତିନିପୁର ଲୋକେ ବୋଲ ॥ ତୁଳସୀ ବୋଲିଣ ନାମ ଦେଲେ ଦେବ୍ୟ-ଜନେ । ପ୍ରମାଣ ହୋଇଲା ଯେ ନାରଦମୁନି ମନେ ॥ ସେ ତୁଳସୀଦଳ ଘେନି ଗଲେ ବ୍ରହ୍ମଶିଷ୍ୟ । ଅମରଭୁବନେ ଯାଇଁ ହୋଇଲେ ପ୍ରବେଶ ॥ ଯେବଣ ତୁଳସୀ ଦଳ ନେଇଥିଲେ ଋଷି । ତିଳ ପ୍ରମାଣରେ ଦେଇ ଦେବତାଙ୍କୁ ତୋଷି ॥ ଋଷିଗଣ ମାନଙ୍କୁ ଥୋକାଏ ଦେଲେ । ସ୍ୱର୍ଗପୁର ଲୋକେ ସବୁ ଜୟ ଜୟ କଲେ ॥ ଦ୍ୱାରିକାଭୁବନ ସୁଖ କେତେହେଁ କହିବା । ସମସ୍ତେହେଁ ରୁକ୍ମିଣୀଙ୍କି କଲେ ଯାଇଁ ସେବା ॥ ବୋଇଲେ ଯେ ଅମ୍ଭେ ଆଶ୍ରେ କରିଛୁଁ ତୁମ୍ଭଙ୍କୁ । ତୁଳସୀର ସେବା ତୁମ୍ଭେ ଶିଖାଅ ଆମ୍ଭଙ୍କୁ । ରୁକ୍ମିଣୀ ବୋଇଲେ ତୁମ୍ଭେ ନ କରିବ କିଛି । ତୁଳସୀଙ୍କ ସେବା କଲେ ସବୁ ଧର୍ମ ଅଛି ॥ ଯାହାଦ୍ୱାରେ ତୁଳସୀଗଛଟି ଥିବ ମଣ୍ଡି । ଯମଦୂତ ତାହାକୁ ଯେ ନ ପାରିବେ ଦଣ୍ଡି ॥ ସ୍ତ୍ରୀ ଯେ ପୁରୁଷ ଯେତେ ଦ୍ୱାରିକାରେ ଥିଲେ । ରୁକ୍ମି-ଣୀର ବଚନେ ତୁଳସୀ ପୂଜା କଲେ ॥ ଏହା ତୁଲେ କାହାକୁ କରିବା ଆଉ ସମ । ହେଳୁ କରି ପାଇଲେ ତୁଳସୀ ସଙ୍ଗେ ଶ୍ୟାମ ॥ ଅର୍ଜ୍ଜୁନଙ୍କୁ ବର୍ଣ୍ଣିଣ ବୋଲନ୍ତି ଜଗନ୍ନାଥ । ତୁଳସୀର ଅବଜନ୍ମ ପୁଚ୍ଛିଲୁ ଯେ ପାର୍ଥ ॥ ତେଣୁକରି ବିସ୍ତାରି କହିଲୁ ସବୁକଥା । କୃଷ୍ଣଦାସ ଭଣେ ମୋହ ନାମରତ୍ନଗୀତା ॥

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀ ହରି ଅର୍ଜ୍ଜୁନ ସମ୍ବାଦେ ନାମ ଚୌବିଂଶୋଽଧ୍ୟାୟଃ ।

---

ପଞ୍ଚବିଂଶ ଅଧ୍ୟାୟ ।

ଅର୍ଜ୍ଜୁନ ଉବାଚ ।

ଅର୍ଜ୍ଜୁନ ବୋଇଲେ ତୁମ୍ଭେ ଶୁଣ ଭବତାରୀ । ସଂସାରସାଗରୁ ପ୍ରଭୁ କର ମୋତେ ପାରି ॥ ମୁହିଁ ଜାଣିବାକୁ ଆଶ୍ରେ କରିଅଛି ତୋତେ । କଥାଏ ପଚାରୁଅଛି

ଆଜ୍ଞା ହେଉ ମୋତେ ॥ ସାତଗୋଟି ଦ୍ୱୀପ ଯେ ସପ୍ତସାଗର ମହୀ । ତହିଁର ବ୍ୟବସ୍ଥା ପ୍ରଭୁ ମୋତେ ଦେବ କହି ॥ ଅର୍ଜୁନ ବୋଇଲେ ମୁଁ ପଚାରୁଅଛୁ ଯାହା । ପ୍ରସନ୍ନ ହୋଇଣ ପ୍ରଭୁ କହିଦେବା ତାହା ॥ ବ୍ରହ୍ମପ୍ରଳୟ ଗୋଷ୍ଠୀ ଶୁଣିଲି କର୍ଣ୍ଣ ଦେଇ । ଜଳାକାର ଉଆଇଲେ କେବଣ ମେଦିନୀ ॥ ବ୍ରହ୍ମା ଉଆଇଲେ ସେ ଯେବଣ ମେରୁ ଗିରି । ଷୋଳସହସ୍ର ଯୋଜନ ତଳକୁ ପୋତା କରି ॥ ଚଉରାଶୀ ସହସ୍ର ଯୋଜନ ତାର ଉଚ୍ଚ । ଲକ୍ଷେକ ଯୋଜନ ସ୍ଥଳୀ ମୋଟ ଦୀର୍ଘ ସଞ୍ଚ ॥ ଏହି ଶାସ୍ତ୍ର ଗୋଷ୍ଠୀତ କହିଲ ପ୍ରଭୁ ମୋତେ । ଅଦ୍ୟ ପୃଥିବୀର କଥା ପଚାରୁଛି ତୋତେ ॥ ଜଳାକାର ସଞ୍ଚରେ ଯେବଣ ବସୁନ୍ଧରୀ । ସେ ମେରୁ କେମନ୍ତେ ପୂର୍ବେ କହ ତଥ୍ୟ କରି ॥ କେତେ ହୋଇଲା ମୋଟ ତଳକୁ ଗଲା କେତେ । ଉପରକୁ ଉଚ୍ଚ ସେ ପୁଣ ହୋଇଲା ଯେତେ ॥ କେମନ୍ତ ପ୍ରକାରେ ପ୍ରଭୁ ଉଆଇଲେ ମହୀ । ସେ କଥା ଗୋଷ୍ଠୀକ ବାରେ ଦେବ ମୋତେ କହି ॥ ଶ୍ରୀହରି ବୋଇଲେ ତୋତେ କହିବା ଅର୍ଜୁନ । ଶୁଣ ସେ ପଚାରୁ ଏତେ କଥା ସନ୍ନିମାନ ॥ ପାତକୀ ଆଗରେ ଏହା ବଖା-ଣିଲେ ଶିବ । ସେ କଥା ଶୁଣିଲେ ତୋର ପାପ କ୍ଷୟ ଯିବ ॥ ଯେଉଁକାଳେ ପୃଥିବୀ ନ ଥିଲା ବୀର ପାର୍ଥ । ଜଳାକାର ସଞ୍ଚରେ ବ୍ରହ୍ମାଣ୍ଡ ଖଣ୍ଡ ସାତ ॥ ଆପଣା ଦେହରୁ ମଳି ଉତ୍ପତ୍ତି କରି । ଜଳରେ ମେଲିଲେ ତାହା ଜଳାକାର ହରି ॥ ସେ ମଳିରକରୁ ଜଳେ ମେଲିଦେଲେ ଯେଣୁ । ତରଙ୍ଗ ଲହରୀ ବାଜ ଲାଗିଲାକ ତେଣୁ ॥ ଦେଖି ଜଳାକାର ଯେ ହୃଦରେ କଲେ ଭୟ । ଶ୍ରୀଅଙ୍ଗରୁ ଉପାଡିଲେ ଗୋଟିଏକ ଲୋମ ॥ ମେରୁ କରି ତାହା ଯେ ସ୍ଥାପିଲେ ବ୍ରହ୍ମବେତ୍ତା । ଷୋଳଲକ୍ଷ ଯୋଜନ ହୋଇଲା ତହିଁ ପୋତା ॥ ଚଉରଲକ୍ଷ ଯୋଜନ ହୋଇଲା ତାର ମୋଟ । ସ୍ଥିତି ପାଞ୍ଚଲକ୍ଷ ଯୋଜନ ଯେ ଅଟେ ଶ୍ରେଷ୍ଠ ॥ ଦଶଲକ୍ଷ ଯୋଜନ ଉତ୍ସର୍ଗ ତାକୁ କଲେ । ସେ ମେରୁ ଉପରେ ଦେବସଭା ଉଆଇଲେ ॥ କଳାଲୋମ ଗୋଟିଏ ଯେ ଉପାଡିଲେ ପୁଣ । ଚଉରଲକ୍ଷ ଯୋଜନ ଯେ ପୋତିଲେ ଆପଣ ॥ ପାଞ୍ଚଲକ୍ଷ ଯୋଜନ ଯେ ହୋଇଲା ତା ସ୍ଥଳୀ । ଷଡ଼ଲକ୍ଷ ଯୋଜନ ହୋଇଲା ମୋଟ ବଳି ॥ ଆଠଲକ୍ଷ ଯୋଜନ ହୋଇଲା ତାର ଶିଖା । ମହାଗିରି ବୋଲକରି ନାମ ଦେଲେ ଏକା ॥ ଦ୍ୱିତୀୟ ଲୋମକୁ ଯେ ପୋତିଲେ ମହାବଳୀ । ଷଡ଼ଲକ୍ଷ ଯୋଜନ ତଳକୁ ଗଲା ଗଳି । ସାତଲକ୍ଷ ଯୋଜନ ହୋଇଲା ସେହୁ ମୋଟ । ସ୍ଥଳୀ ତାର ହୋଇଲା ଯୋଜନ ଲକ୍ଷ ଆଠ ॥ ନବଲକ୍ଷ ଯୋଜନ ଅଟଇ ଉଚ୍ଚ ଯେଣୁ । ମନ୍ଦର ବୋଲିଣ ତାର ନାମ ଦେଲେ ତେଣୁ ॥ ମନ୍ଦର ବାୟବ୍ୟ କୋଣେ ହେଲା ମହାରୋଟ । ଅଗ୍ନିକୋଣେ ପୋତିଲେ ଯେ ହେଲା ଗିରିଶ୍ରେଷ୍ଠ ॥ ପୁଣିହିଁ ପୋତିଲେ ନେଇ ଏକ ଲୋମ ଗୋଟି । ସାତଲକ୍ଷ ଯୋଜନ ତଳକୁ ଗଲା ପୋଟି ॥ ଷଡ଼ଲକ୍ଷ ଯୋଜନ ହୋଇଲା ସେହୁ ମୋଟ । ନବ-ଲକ୍ଷ ଯୋଜନ ଯାଇଁ ଲାଗିଲା ହେଟ ॥ ପାଞ୍ଚଲକ୍ଷ ଯୋଜନ ହୋଇଲା ତାର ସ୍ଥଳୀ । ଉଦେଗିରି ବୋଲି ନାମ ଦେଲେ ମହାବଳୀ ॥ ମେରୁ ପୂର୍ବଭାଗରେ ସେ ହେଲା ଅବ୍ୟ

ସାର । ଯତନ କରି ତାହା ପୋତିଲେ ଈଶ୍ୱରାକାର ॥ ଉଦେଗିରି ପଶ୍ଚିମରେ ଅଛି ଯେଉଁ ଗିରି । ପରମ ଅଦ୍ଭୁତ ଭୁବନ, ଅଛି ସେହୁ ପୁରୀ ॥ ସେ ସ୍ଥାନରେ ବସେ ପୁଣ ଶ୍ରୀଶ୍ୟାମସୁନ୍ଦର । ଯେଣୁ ସେ ଅଟନ୍ତି ଜାଣ ପଦ୍ମାଙ୍କର ବର ॥ ମୋହ ନାମରତ୍ନଗୀତା ରସ ଅଟେ ଏହୁ । ଦୀନକୃଷ୍ଣ ଦାସ ଏହା ଭାବରେ ଭଣଇ ॥

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀ ହରି ଅର୍ଜୁନ ସମ୍ବାଦେ
ନାମ ପଞ୍ଚଚତ୍ୱାରିଂଶୋଽଧ୍ୟାୟଃ ।

---

## ଛୟାଳିଶ ଅଧ୍ୟାୟ ।

### ଶ୍ରୀ ଭଗବାନ୍‌ବାଚ ।

ଅର୍ଜୁନ ଆଗରେ ଯେ କହନ୍ତି ନନ୍ଦବାଳ । ଏକମନେ ଶୁଣ ତୁ ହୋ କୁନ୍ତୀର ଦୁଲାଳ ॥ ଚତୁର୍ଥେ ଲୋମେକ ଉପାଡିଲେ ବ୍ରହ୍ମବେତ୍ତା । ଷଡ଼ଲକ୍ଷ ଯୋଜନ ଭୂମିରେ ଗଲା ପୋତା ॥ ଅଷ୍ଟଲକ୍ଷ ଯୋଜନ ହୋଇଲା ମୋଟ ଏକ । ନବଲକ୍ଷ ଯୋଜନେ ଲାଗିଲା ତାର ଶିଖ ॥ ସେ ଚତୁର୍ଥ ଲୋମ ଜାଣ ହୁଅନ୍ତି ଉଦକ । ଲୋକାଲୋକ ପର୍ବତ ତାହାଙ୍କୁ ବୋଲ ପାର୍ଥ ॥ ମେରୁ ନୈର୍ଋତ କୋଣରେ ହେଲା ଦବ୍ୟ ସାର । ପଦ୍ମକରେ ଧରିଣ ପୋତିଲେ ଈଶ୍ୱରାକାର ॥ ପଞ୍ଚମରେ ଲୋମେକ ଉପାଡ଼ି ଜଗତ୍ପିତା । ସାତଲକ୍ଷ ଯୋଜନ ତଳକୁ କଲେ ପୋତା ॥ ଆଠଲକ୍ଷ ଯୋଜନ ଉଚ୍ଚଲା ସ୍ଥୂଳ ମାତ୍ର । ନବଲକ୍ଷ ଯୋଜନ ତଳକୁ ଶିଖା ବଢ଼ି ॥ ମେରୁର ଦକ୍ଷିଣ ପାଶେ ପୋତିଲେକ ଯେଣୁ । ନୀଳାଚଳ ବୋଲିଣ ଯେ ନାମ ଦେଲେ ତେଣୁ ॥ ମର୍ତ୍ତ୍ୟଭୁବନକୁ ସେ ଅପୂର୍ବ ଗିରିବର । ପଦ୍ମକରେ ଧରିଣ ପୋତିଲେ ଚକ୍ରଧର ॥ ଷଷ୍ଠରେ ଲୋମେକ ପ୍ରଭୁ ଉପାଡିଲେ ବଳ । ପଞ୍ଚଲକ୍ଷ ଯୋଜନ ତଳକୁ ପୋତାଗଲା ॥ ଛଅଲକ୍ଷ ଯୋଜନ ହୋଇଲା ତାର ମୋଟ । ନବଲକ୍ଷ ଯୋଜନ ହୋଇଲା ତାର ହେଟ ॥ ମେରୁର ପଶ୍ଚିମେ ସେହୁ ହେଲା ଦବ୍ୟସାର । ଅସ୍ତଗିରି ବୋଲି ନାମ ଦେଲେ ଈଶ୍ୱରାକାର ॥ ସପତମେ ଲୋମେକ ଯେ ଉପାଡିଲେ ପୁଣି । ସାତଲକ୍ଷ ଯୋଜନ ଯେ ପୋତିଲେ ଧରଣୀ ॥ ଆଠଲକ୍ଷ ଯୋଜନ ହୋଇଲା ମୋଟ ଏକା । ନବଲକ୍ଷ ଯୋଜନେ ଲାଗିଲା ଯାଇ ଶିଖା ॥ ମେରୁର ଉତ୍ତରଭାଗେ ହେଲା ଏ ପୋତିଲେ । ହେମବନ୍ତ ବୋଲିଣ ତାହାର ନାମ ଦେଲେ ॥ ଅବର ଲୋମେକ ପୁଣି ଉପାଡିଲେ ରାଗେ । ସେ ହେଲା ପୋତିଲେ ଯେ ଐଶାନ୍ୟ କୋଣଭାଗେ ॥ ମେରୁ ଐଶାନ୍ୟ କୋଣେ ଯେ ହେଲା ମହାବଳୀ । ସାତଲକ୍ଷ ପୋତା ସେ ଯେ ଆଠଲକ୍ଷସ୍ଥୂଳି ॥ ଅଷ୍ଟହେଲା ଏମନ୍ତେ ପୋତିଲେ ଭଗବାନ । ନିଶ୍ଚଳ ହୋଇଲା ପୃଥ୍ୱୀ ଶୁଣ ତୁ ଅର୍ଜୁନ ॥ ଯେଉଁଭାବେ କଲେ ପୃଥ୍ୱୀ ପ୍ରଭୁ ଜଗଦ୍ରକ୍ଷ । ଗୀତାରେ ଭଣିଲେ ତାହା ଦୀନକୃଷ୍ଣ ଦାସ ॥

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀ ହରି ଅର୍ଜୁନ ସମ୍ବାଦେ ନାମ ଷଟ୍‌ଚତ୍ୱାରିଂଶୋଽଧ୍ୟାୟଃ ।

---

## ସପ୍ତତ୍ରିଂଶ ଅଧ୍ୟାୟ ।

### ଶ୍ରୀ ଭଗବାନୁବାଚ ।

ଅର୍ଜୁନ ଆଗରେ ଯେ କହନ୍ତି ଭଗବାନ । ଏକମନେ ଶୁଣ ତୁ ହେ ପାଣ୍ଡୁର ନନ୍ଦନ ॥ ଏକୋଇଶ ବ୍ରହ୍ମାଣ୍ଡ ପାତାଳପୁର କଲେ । ଚାରିବେଦ ଜାତ କରି ଧ୍ୟାନରେ ବସିଲେ ॥ ଅନନ୍ତକୋଟି କଳ୍ପନା ଧ୍ୟାନ କଲେ ଯହିଁ । ସେ ପୁରୁଷ ଅଙ୍ଗୁଷ୍ଠାଳ ଉପୁଜିଲା ତହିଁ ॥ ଅନନ୍ତ ମୂରତି ଜାଣ ଶ୍ରୀମତୀ ରମଣ । ସେ ମଧ୍ୟେ ଦକ୍ଷିଣ ହୃଦେ ହେଲେ ଭଗବାନ ॥ ଶ୍ରୀମତୀଙ୍କି ବୋଲନ୍ତି ସେ ଶ୍ରୀଘନଶ୍ୟାମସୁନ୍ଦର । ପରମାନନ୍ଦୀଙ୍କୁ ହକେ କର ନାସ୍ତିକର । ବାମକରେ ଷ୍ଠାଳ ପୋଛି ପକାନ୍ତେଣ ଝେଡ଼ି । ତହିଁ ଜାତ ହୋଇଲା ଯେ ଏକଇ ଯୁବତୀ ॥ ନୁହଇ ସ୍ତିରୀ ହବା ନୁହେ ପୁରୁଷ ଯେଣୁ । ଆଦ୍ୟ ଯେ ଅପର୍ଣ୍ଣା ବୋଲି ନାମ ଦେଲେ ତେଣୁ ॥ ସେ ମହାସୁନ୍ଦରୀ ଦରଶନ୍ତେ ଠାଣି-ମାଣି । ପ୍ରଭୁଙ୍କର ଆସନ ଟଳିଲା ଦେଖି ଶୁଣି ॥ ରୂପ ଯଉବନ ଦେଖି ନ ପାରିଲେ ସହି । ଶ୍ରୀଅଙ୍ଗରୁ ବୀଜ ଖସି ପଡ଼ିଲାକ ମହୀ ॥ ଧାଇଁକାରେ ହସ୍ତେ ତା ଧଇଲେ ଈଶ୍ୱକାର । ନଖ ଘେନି ଜାନୁ ଚିରି ଦେଲେ ତାର ॥ ଦଗନାମେ ଦ୍ୱାରେକ ଯେ ଉପୁଜିଲା ତହିଁ । ଇନ୍ଦ୍ରଙ୍ଗ କରି ବୀଜ ଢାଳିଦେଲେ ନେଇ ସେ ବୀଜପଡ଼ିଲା ଯହିଁ ତାର ଦ୍ରବ୍ୟ ଯୋଗ । ବ୍ରହ୍ମା ବିଷ୍ଣୁ ମହେଶ୍ୱର ଉପୁଜିଲେ ତିନ । ବ୍ରହ୍ମାଙ୍କୁ ବୋଇଲେ ବିଷ୍ଣୁ ତୁ ଜଗତ କର୍ତ୍ତା । ବିଷ୍ଣୁଙ୍କୁ ଲାଗିଲା ସୃଷ୍ଟି ପାଳିବାର ଚିନ୍ତା ॥ ଈଶ୍ୱର ବୋଲଣ ଯେଉଁ ପୁଣ ଗୋଟି ନାମ । ତାହାଙ୍କୁ ବୋଇଲେ ତୁ ସାଧିବୁ ବ୍ରହ୍ମଜ୍ଞାନ ॥ ଏମନ୍ତ ପ୍ରକାରେ ଆମ୍ଭେ ଜାତ ତିନି ଭାଇ । ଏବେ ଯାହା ପଚାରିବୁ ଦେବା ତୋତେ କହି ॥ ଅର୍ଜୁନ ବୋଇଲେ ଯାହା ଶ୍ରୀମୁଖେ ବୋଇଲ । ଏକୋଇଶ ବ୍ରହ୍ମାଣ୍ଡ ପାତାଳେ ସ୍ଥିତି କଲ ॥ ଏ କଥା ବିସ୍ତରି ମୋତେ କହ ଚକ୍ରପାଣି । କେ କେ ମାନେ କେଉଁ ପୁରେ କରନ୍ତି ଭ୍ରମଣି ॥ ଶ୍ରୀହରି ବୋଇଲେ ଯାହା ପୁଚ୍ଛିଲୁ ଅର୍ଜୁନ । ଜମ୍ବୁଦ୍ୱୀପ ପୃଥ୍ୱୀକି ଯେ ଲକ୍ଷେକ ଯୋଜନ ॥ ବେନି ଲକ୍ଷ ଯୋଜନ ବେଢ଼ିଛି କ୍ଷାରପାଣି । ଶାକୁନାମେ ଅଦ୍ଭୁତ୍ୟ ସେ ଦ୍ୱୀପକୁ କାରେଣୀ ॥ ଈଶାକର ନାମେଣ ଚନ୍ଦ୍ରମା ଏଥି ରହି । ଏ ଦ୍ୱୀପକୁ ଧରିଛି ବାସୁକି ନାମେ ଅହି ॥ ବସୁନାମେ ଦ୍ୱୀପେକ ତହିଁର ତଳେ ଅଛି । ଚାରିଲକ୍ଷ ଯୋଜନ ସେ ଶୁଣ ସବ୍ୟସାଚି ॥ ପାଞ୍ଚଲକ୍ଷ ଯୋଜନ ସେ କ୍ଷୀରସିନ୍ଧୁ ଭାଗ । ତାହା ଧରିଅଛଇ ଅନନ୍ତ ନାମେ ନାଗ ॥ ସାବଧାନେ ଶୁଣ ତୁମ୍ଭେ ପାଣ୍ଡୁର କୁମର । ବୁଝାଇ କହିବା ତୋତେ ଏକୋଇଶ ପୁର ॥ ଏମନ୍ତ ମହିମା ପୁଣ ଶ୍ରୀନନ୍ଦନନ୍ଦନ । ସପ୍ତଦଶ ଅଙ୍କ ଉଦେ ହୋଇବ ଯେ ପୁଣ ॥ ଶ୍ରୀମତୀ ବହିଲେ ଯେଣୁ ପ୍ରଭୁ ବଂଶୀଧର । ଅନନ୍ତ ରୂପ ଅଟେ ସେ ପ୍ରଭୁ କଲେବର ॥ ବୃନ୍ଦାବନଚନ୍ଦ୍ର ନାମ ତାହାର ପ୍ରକାଶ । ତାର ଶିରେ ଛିମନ୍ତ କରିବେ ପୀତବାସ ॥ ମୋହ ନାମରତ୍ନଗୀତା ଅଟଇ ଯେ ପୁଣ । ଦୀନକୃଷ୍ଣ ଦାସ ଏହା ଭାବୁଥାଇ ଜାଣ ॥

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀ ହରି ଅର୍ଜୁନ ସମ୍ବାଦେ ନାମ ସପ୍ତତ୍ରିଂଶୋଽଧ୍ୟାୟଃ ।

## ଅଷ୍ଟବିଂଶ ଅଧ୍ୟାୟ ।

### ଶ୍ରୀ କୃଷ୍ଣଉବାଚ ।

ଅର୍ଜ୍ଜୁନ ଆଗରେ ଯେ କହନ୍ତି ଚକ୍ରପାଣୀ । ଏକମନେ ଶୁଣ ତୁ ହୋ ଯୁଧିଷ୍ଠିର ଭାଇ ॥ ଷଡ଼ଲକ୍ଷ ଯୋଜନ ଲବଣସିନ୍ଧୁ ତହିଁ । ସେ ଦ୍ୱୀପକୁ ବେଢ଼ିଛୁ ମଣ୍ଡଳାକାର ହୋଇ ॥ ଅନନ୍ତ କୂର୍ମ୍ମ ତାହା ଧରିଅଛୁ ଜାଣ । ତହିଁ ତଳେ ଅଛଇ ଯେ ମହୀ ନାମେ ପୁର । ଷଡଲକ୍ଷ ଯୋଜନ ସେ ପୁର ଯଥାବଧି । ସାତଲକ୍ଷ ଯୋଜନ ସମୁଦ୍ର ମହୋଦଧି ॥ ହଲା ନାମେ ବାସୁକୀ ଯେ ଧରିଅଛୁ ତାହା । ତହିଁ ତଳେ ସୁରେଳ ଅଛଇ ପାର୍ଥ ଯାହା ॥ ତହିଁର ତଳ ପାର୍ଥ ଫେଣ ଦେବା କହୁ । ସାତଲକ୍ଷ ଯୋଜନ ସେ ଦିବ୍ୟ ପୃଥ୍ୱୀ ମହୀ ॥ ଅନନ୍ତ ମୂରତି ଯେ ଧରିଣଛନ୍ତି ତାହା । ଶୁଣ ତୁ ଅର୍ଜ୍ଜୁନ ମୋତେ ପୁଚ୍ଛା କଲୁ ଯାହା ॥ ସାର ନାମେ ଦ୍ୱୀପେକ ତହିଁର ତଳେ ଅଛୁ । ଅଠଲକ୍ଷ ଯୋଜନ ସେ ଶୁଣ ପାଣ୍ଡୁବଂଶି ॥ ଦଧି ନାମେ ସମୁଦ୍ର ବୋଲନ୍ତି ପାର୍ଥଯାକୁ । ନବଲକ୍ଷ ଯୋଜନ ସେ ବେଢ଼ିଅଛୁ ତାକୁ ॥ ମେଦା ନାମେ ସର୍ପେକ ତା ଧରିଅଛୁ ଜାଣ । ତହିଁ ତଳେ ଅଛଇ କଞ୍ଚନ ନାମେ ପୁର ॥ ନବଲକ୍ଷ ଯୋଜନ ସେ ଅଟଇ ଧରଣୀ । ଦଶଲକ୍ଷ ଯୋଜନ ସମୁଦ୍ର ରଙ୍ଗପାଣି ॥ ତାହା ଧରିଅଛୁ ହଳଧର ସଙ୍କର୍ଷଣ । ତହିଁ ତଳେ ବୈଷ୍ଣବ ନାମ ପୁରେ ଉଆଣ ॥ ଦଶଲକ୍ଷ ଯୋଜନ ସେ ପୃଥ୍ୱୀ ଅଛୁ ମାଣ୍ଡ । ଏଗାର ଲକ୍ଷ ଯୋଜନ ସୁରାସିନ୍ଧୁ ବେଢ଼ି ॥ ତାହା ଧରିଅଛୁ ବାସୁଦେବ ଭଗବାନ । ତହିଁ ତଳେ ସୁରେଳ ଯେ ଅଛଇ ଅର୍ଜ୍ଜୁନ ॥ ଏଗାର ଲକ୍ଷ ଯୋଜନ ପୃଥ୍ୱୀ ପ୍ରାଣବନ୍ଧୁ । ବାରଲକ୍ଷ ଯୋଜନ ବେଢ଼ିଛୁ ତହିଁ ସିନ୍ଧୁ । ତାହା ଧରିଅଛୁ ବଳି ଧ୍ରୁବ ନାମେ ରାଜ୍ୟ । ତାହାତଳେ ସୁରେଳ ଯେ ଅଛୁ ଧନଞ୍ଜୟ ॥ ବାରଲକ୍ଷ ଯୋଜନ ସେ ପୃଥ୍ୱୀ କଳେବର । ତାହା ଧରିଅଛୁ ବଳରାମ ହଳଧର ॥ ଦଶଦ୍ୱୀପ ତଳେଯେତେ ପୁରମାନ ଅଛୁ । କେକେହେଁ ଜରୋପି ତାହା କହିବା ନବସ୍ତି ॥ ଠିକ ଠିକ କରି ତାହା ଶୁଣିଥାଅ ଜାଣ । ଚଉଦଲକ୍ଷ ଯୋଜନ ତହିଁ ତଳପୁର ॥ ତାହା ଧରିଅଛୁ ଶଙ୍ଖ ନାମେ ମହୀପତି । ପନ୍ଦର ଲକ୍ଷ ଯୋଜନ ତହିଁ ତଳ ପୃଥ୍ୱୀ । ସେ ଦ୍ୱୀପର ଭାର ସହି ନ ପାରନ୍ତି କେହି । ଜ୍ଞାନବର ନାମେ ସେ ପୁରକୁ ଅଛୁ ବହି ॥ ତାହା ତଳେ ସୁରେଳ ଯେ ଅଛୁ ଧନଞ୍ଜୟେ । ଅଠର ଲକ୍ଷ ଯୋଜନ ଦୀର୍ଘ ପ୍ରସ୍ଥ ହୁଏ ॥ ସିଂହ ନାମେ ନାରାୟଣ ଧରିଛନ୍ତି ତାହା । ତହିଁ ତଳେ ସୁରେଳ ଅଛଇ ପାର୍ଥ ଯାହା ॥ ନବଲକ୍ଷ ଯୋଜନ ସେ ଦ୍ୱୀପ ଦିବ୍ୟବାସ । ତାହା ଧରିଅଛୁ ତପୀ ଜଙ୍ଗମ ପୁରୁଷ ॥ ତହିଁର ତଳରେ ଦିବ୍ୟ ସୁରେଳ ଯେ ଅଛୁ । ଚୋଉଦଲକ୍ଷ ଯୋଜନ ଶୁଣ ସବ୍ୟସାଚି ॥ ମୁକୁନ୍ଦି ନାମରେ ଜାଣ ପୁରୁଷ ଗୋସାଏ । ସେ ପୁରୁଷ ଧରିଅଛୁ ଶୁଣ ଧନଞ୍ଜୟେ ॥ ତହିଁ ତଳେ ସୁରେଳ ଯେ ଅଛୁ ମହାଶ୍ରେଷ୍ଠ । ଏକୋଇଶ ଯୋଜନ ସେ ପୁର ଅଟେ ମୋଟ ॥ ତହିଁପରେ ପରମ ଈଶ୍ୱର ଭଗବାନ । ଶ୍ରୀମନ୍ତ ରମଣେ ବୋଲ ଶ୍ରୀନନ୍ଦନନ୍ଦନ ॥ ଯେତେବେଳେ ସପ୍ତଦଶ ଅଙ୍କ ହେବ ଜାଣ । ଯୁଧିଷ୍ଠିର

ନାମେ ଅଛ ଦ୍ରବ୍ୟ ସିଂହ ସ୍ୱାମୀ ॥ ମୋହ ନାମରତ୍ନଗୀତା ହୋଇବ ପ୍ରକାଶ ।
ଶ୍ରୀକୃଷ୍ଣ ବୋଲେ ଏହା ଶୁଣ ପୀତବାସ ।

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀହରି ଅର୍ଜୁନ ସମ୍ବାଦେ ନାମ
ଅଷ୍ଟଚତ୍ୱାରିଂଶୋଽଧ୍ୟାୟଃ ।

---

## ଊନପଞ୍ଚାଶ ଅଧ୍ୟାୟ ।

### ଶ୍ରୀକୃଷ୍ଣ ଉବାଚ ।

ଅର୍ଜୁନ ଆଗରେ ଯେ କହନ୍ତି ବନମାଳୀ । ଏକମନେ ଶୁଣ ତୁ ମୋ ସୃଷ୍ଟି
ରଚନେକ ॥ ତାହା ଧରିଅଛଇ ଯେ ଗୁଣ କୂର୍ମୀଶୂତ । ବଳବନ୍ତ ନାମେ ଏକ ଖଣ୍ଡ
ଯେ ପ୍ରମତ ॥ ତହୁଁ ତଳେ ପୁରେକ ଯେ ଅଛୁ ଦ୍ରବ୍ୟ ଝୁଲି । ବାଇଶ ଲକ୍ଷ ଯୋଜନ
ସେ ପୁରର ସ୍ଥଳୀ ॥ ଦକ୍ଷଦେବ ନାମେଣ ପୁରୁଷ ତହୁଁ ଅଛୁ । ସେ ଦ୍ୱୀପ ସେ
ଧରିଅଛୁ ପୁଣ ପାଣ୍ଡୁବସ୍ତି । ତହୁଁ ତଳେ ପୁରେକ ଯେ ଅଛଇ ଅର୍ଜୁନ । ତେଇଶ-
ଲକ୍ଷ ଯୋଜନ ସେ ପୁରର ସ୍ଥାନ ॥ ନୀଳକଣ୍ଠ ନାମେଣ ପୁରୁଷେ ଅଛୁ ତହୁଁ । ସେ
ପୁରୁଷ ଧରିଅଛୁ ଅଙ୍ଗରେଣ ବହି ॥ ତହୁଁତଳେ ପୁରେକ ଅଛଇ ହାଦେ ଜାଣ ।
ଚବିଶଲକ୍ଷ ଯୋଜନ ଅଟଇ ସେ ସ୍ଥାନ ॥ ଦଣ୍ଡଦେବା ବୋଲିଣ ଶାସ୍ତ୍ରରେ କହି
ଯାହା । ନୀଳାମ୍ବର ପୁରୁଷ ସେ ଧରିଅଛୁ ତାହା । ପାତାଳ ବୈକୁଣ୍ଠ ତାକୁ ବୋଲନ୍ତି
ଅର୍ଜୁନ । ବାସୁକୀ ଜଳଧି ମୋହଠାରେ ଉତପନ୍ନ ॥ କୋଟିଏ ବ୍ରହ୍ମାଣ୍ଡ ତଳେ
ଏକୋଇଶପୁର । ପାତାଳ ବୈକୁଣ୍ଠ ପୁରେ ପ୍ରଭୁ ନିରାକାର ॥ ସେ ଭୁବନେ ଯେତେ
ଦ୍ରବ୍ୟ ଉପୁଜଇ ପାର୍ଥ । ସୁନା ଯେ ମାଣିକ୍ୟ ହୀରା ମୁକୁତା ମରକତ ॥ ନବରତ୍ନ
ଅଦ୍ଭୁତରି ଉପୁଜଇ ତହୁଁ । ନିରାକାର ପୁରୁଷଙ୍କ ପଟାନ୍ତର ନାହିଁ ॥ ତାହାଙ୍କ ମହିମା
ପୁଣ କହି ଦେବା ଏବେ । ମନରେ ପରତେ ପାର୍ଥ ନ କରିଲୁ ଯେବେ ॥ ଅଶେଷ
ମହିମା ପାର୍ଥ କେ ପାରିବ କହି । ଏଡ଼େବଡ଼ ପୁରୁଷେ ଯେ ବ୍ରହ୍ମାଣ୍ଡରେ ନାହିଁ ॥
ଷାଠିଲକ୍ଷ ଯୋଜନ ବିସ୍ତାର ଦ୍ରବ୍ୟ ସଙ୍ଖ । ଦଶାଶତେ ଯୋଜନ ଯେ ଶିଖା ତାର
ହିତ । ବୈକୁଣ୍ଠଭୁବନେ ସେ ପୁରୁଷ ଥାଇ ହାଦେ । ତାଙ୍କ ଯେ ଅଦ୍ଭୁତ ତହୁଁ
ଷୋଳଚନ୍ଦ୍ର ଉଦେ । ସେ ଭୁବନ ଭିତରେ ଯେ ନିରାକାର ଥାଇ । ସର୍ପ ଗୋଟିଏକ
ଅଛୁ ସିଂହଦ୍ୱାରେ ରହି ॥ ଲକ୍ଷମୁଣ୍ଡ ଏକଠାବେ ଗଢ଼ିଅଛୁ ତାର । ଏମନ୍ତ ପ୍ରକାରେ
ସେ ଜଗଇ ସିଂହଦ୍ୱାର ॥ ନିରାକାର ପ୍ରଭୁଙ୍କର ତେଜ ଅଟେ ଯେତେ । ସର୍ପର
ତେଜହିଁ ଜାଣ ବଳଇ ତେତେ ॥ ସେ ସର୍ପ ଦକ୍ଷିଣଚକ୍ଷୁ ଇଙ୍ଗ ଜାଣ ହାଦେ ।
କୋଟିଏ ସୂର୍ଯ୍ୟର ତେଜ ହୋଇଥାଇ ଉଦେ ॥ ବାମଚକ୍ଷୁ ଗୋଟାକ ଯେ
କୋଟିଚନ୍ଦ୍ର ପ୍ରଭା । ଶାନ୍ତ ଯେ ଶୀତଳ ଯେସ ଯାଉଅଛୁ ଶୋଭା । ସେ ସର୍ପର
ଛାମୁରେ ବୃକ୍ଷେକ ଅଛୁ ରହି । ଦେବକାଶନ ବୋଲିଣ ତାହାକୁ ଯେ କହି ॥
ଋଷିଗଣ ଦେବତା ତହିଁରେ ଯେତେ ଥାନ୍ତି । ନିରାକାର ପ୍ରଭୁଙ୍କୁ ଦର୍ଶନ କରିଯାନ୍ତି ॥

ସେ ବୃକ୍ଷର ତଳେ ତ୍ରିଜ୍ଞ ହୁଅନ୍ତେଣ ପାର୍ଥ । ତେଜ ଲାଗି ସମସ୍ତ ଦେବତା ଯାନ୍ତି ନାଶ ॥ କେତେ ବ୍ରହ୍ମା କେତେ ଦକ୍ଷ କେତେ ଦେବଗଣ । କେତେ ସୂର୍ଯ୍ୟ କେତେ ଇନ୍ଦ୍ର କେତେକ ବରୁଣ ॥ କେତେ କୁବେର କେତେକ ପବନ ହର । ସେ ବୃକ୍ଷ ତଳକୁ ଗଲେ ସମସ୍ତେହେଁ ମର ॥ ଅସ୍ଥି ଚର୍ମ କେତେ ତହିଁ ଗଣିମା ଶ୍ରୀବତ୍ସ । ଶ୍ରୀରାମ ମୂରତି ପଡ଼ିଛନ୍ତି ଦଶଲକ୍ଷ ॥ ଦୈତ୍ୟପାଳ ବୋଲିକରି ବ୍ରହ୍ମା ଏକ ଥିଲା । ଶତ-କୋଟି ବାର ସେହୁ ବୃକ୍ଷତଳେ ମଲା ॥ ଶତେକୋଷ୍ଠା ବଦନ ଯେ ତାହାର ଅର୍ଜୁନ । ବ୍ରହ୍ମାମାନଙ୍କରେ ଯେ ଅଟଇ ମୋକ୍ଷପାନ ॥ ଦର୍ଶନକୁ ନାଇଣ ପାଇଲା ମହାଦଣ୍ଡ । ବୃକ୍ଷତଳେ ପଡ଼ିଅଛୁ ଶତେକୋଟି ପିଣ୍ଡ ॥ ଏମନ୍ତ ପ୍ରକାରେ ଯେ ଦେବତାମାନେ ଗଲେ । ହରାକାରଠାରୁ ଆଉ କେହୁ ନ ଆସିଲେ ॥ ମଞ୍ଜୁପୁର ମଧ୍ୟେ ଏହା ଥିଲେ ବଳରାମ । ସର୍ପରୂପ ଧଇଲେ ଯେ ଅଇନବ ନାମ ॥ ଦେବନାଶନ ତରୁଙ୍କ ଉପରେ ଶ୍ରୀହରି । ବୃକ୍ଷର ଉପରେ ଛଇଯୂଣ ଗଲେ ବଳି ॥ ତେଣୁକରି ତେଜ ତାଙ୍କୁ ନ ଲାଗଇ ଆଉ । ପ୍ରତ୍ୟକ୍ଷେ ଦେଖିଲେ ହରିକାର ମହାବାହୁ ॥ ଦେବତରୁ ଉପରେ ଶୂନ୍ୟରେ ଗଲେ ଉଡ଼ି । ହରିକାର ପ୍ରଭୁଙ୍କ ସମ୍ମୁଖରେ ଯାଇଁ ପଡ଼ି । ସାବଧାନ ହୋଇ ତୁ ହେ ଶୁଣ କୁନ୍ତୀଶିଷ୍ୟ । ଗୀତରେ ବର୍ଣ୍ଣିଲେ ଏହା ଜାନକୃଷ୍ଣ ଦାସ ॥

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀହରି ଅର୍ଜୁନ ସମ୍ବାଦେ ନାମ
ଊନପଞ୍ଚାଶୋଽଧ୍ୟାୟଃ ।

---

## ପଞ୍ଚାଶ ଅଧ୍ୟାୟ ।

ଶ୍ରୀଭଗବାନୁବାଚ ।

ଏଥି ଅନନ୍ତରେ ତୁ ହେ ଶୁଣିମା କିରୀଟି । ସର୍ପରୂପେ ବଳରାମ ହରିକାର କୋଟି । ସେହୁ ବଳରାମ ଯେ ପ୍ରତ୍ୟକ୍ଷେ ସଦାଶିବ । ଆନ ହିଏ ହୋଇଲେ ତ ପ୍ରଭୁଙ୍କୁ କେଟିବ । ଯୋଗଧ୍ୟାନ ସମାଧିରେ ଉଡ଼ିଗଲେ ହରି । ଦେବତରୁ ଉପରେ ଯେ ଛଇଯୂଣ ଦୂର ॥ ଦେଖି ହରାକାର ଯେ ବୋଇଲେ ତାଙ୍କ ସ୍ଥହିଁ । ହେ ହୋ ବଳରାମ ତୁ ଅଇଲୁ କାହିଁ ପାଇଁ । ଏ ମୋହର ତେଜ ଲାଗି ହେଲୁ ମୋହଗତ । ଉଠ ବୋଲି ଆଜ୍ଞା ଦେଲେ ଅନାଦି ଅଚ୍ୟୁତ । ପ୍ରଭୁଙ୍କର ବଚନେ ଉଠିଲେ ବଳ-ରାମ । କରପଦ୍ମ ଯୋଡ଼ି କଲେ ଦଣ୍ଡପରଣାମ । ବୋଇଲେ ହେ ପ୍ରଭୁ ମୁଁ ଯେ କରୁଛୁ ଗୁହାରି । ସାବଧାନ ହୋଇ ତୁମ୍ଭେ ଶୁଣ ଦଇତ୍ୟାରି ॥ ଦେବନାଶନ ମହା-ବୃକ୍ଷର ତଳେ ଯାଇଁ । କେତେ କେତେ ଅସ୍ଥି ପଡ଼ିଅଛଇ ଗୋସାଇଁ ॥ ବ୍ରହ୍ମା ଦକ୍ଷ ମହେଶ୍ୱର ଇନ୍ଦ୍ର, ସୂର୍ଯ୍ୟ କେତେ । ବରୁଣ କୁବେର ବାୟୁ ଅନଳକୁ ଯେତେ ॥ କେତେ ଦେବତା ହେ ପ୍ରଭୁ ପଡ଼ିଛନ୍ତି ତହିଁ । ସେମାନଙ୍କୁ ମୁକତି କରତା କେହୁ ନାହିଁ ॥ ତୁମ୍ଭ ଦରଶନକୁ ସେମାନେ କଲେ ଶ୍ରଦ୍ଧା । ଅନାଥ ହୋଇଣ ଯେ ପାଇଲେ ମୃତ୍ୟୁ ବାଧା ॥ ତୁମ୍ଭେ ସେ ସୁଦୟା ମନେ ନ କଲ ତହିଁବ । ବଡ଼ ପ୍ରଭୁଙ୍କୁ ସେବିଲେ ଏହୁ

ଗଲ ଛନ୍ଦ ॥ ଈଶ୍ୱରାକାର ବୋଇଲେ ଯେ ବଳରାମ ଆଗେ । ଶୀବସ୍ତ କରଣକୁ ଘେନଣ ଅସ ବେଗେ ॥ କେତେ ବ୍ରହ୍ମା କେତେ ଦକ୍ଷ ହୋଇଛନ୍ତି ନାଶ । ତଲବ କରିବା ତାକୁ ବେଗେ ଘେନ ଅସ ॥ ଆଜ୍ଞା ପାଇ ବଳରାମ ବେଗକରି ଗଲେ । ପ୍ରଭୁଙ୍କ ଛାମୁରେ ନେଇ ଶୀବସ୍ତକୁ ଦେଲେ ॥ ଈଶ୍ୱରାକାର ବୋଇଲେ କରଣ ମୁଖ ଚାହିଁ । କେତେ ଦେବ ମରିଛନ୍ତି ଗଣିଅସ ଯାଇଁ ॥ ଆଜ୍ଞା ପାଇ ଶୀବସ୍ତ କରଣ ଚଳିଗଲା । କୃଷ୍ଣଚଳେ ଧାଡ଼ଦାଣ୍ଡରେ ପ୍ରବେଶ ହୋଇଲା ॥ ପାଞ୍ଜି ପତ୍ର ତଲବ ସେ ଦେଲ ମହାତ୍ମା । ସତାନବେକୋଟି ଏକା ମରିଛନ୍ତି ବ୍ରହ୍ମା ॥ ଶତେସତ୍ତ ସଦାଶିବ ଚଳିଛନ୍ତି ଲେଖି । ଦକ୍ଷ ମରିଛନ୍ତି ଏକା ପଞ୍ଚବିଂଶ କୋଟି ॥ ଇନ୍ଦ୍ର, ସୂର୍ଯ୍ୟ ବରୁଣ ଯେ ପବନ ଦେବତା । କେତେ କେତେ ମରିଛନ୍ତି ନୁହନ୍ତି ଗଣିତା । ବ୍ରହ୍ମାଙ୍କ ଦିନେ ସେ ଯେ ହୁଅନ୍ତି ଅବଶେଷ । ଚାରିସତ୍ତ ଯୁଗ ଯାନ୍ତି ଦିବସକେ ନାଶ ॥ ଏମନ୍ତ ସମୟରେ ସେ ପ୍ରଭୁ ଈଶ୍ୱରାକାର । ବୋଲନ୍ତି ହେ ଶୁଣ ଭୃତ୍ୟ ଅନନ୍ତ ଈଶ୍ୱର ॥ ଆମ୍ଭର ପ୍ରଭୁ ଅଛନ୍ତି ଯେଣୁ ବଂଶୀଧର । ଶ୍ରୀନନ୍ଦୀରମଣ ସେ ଯେ ଶ୍ରୀଶ୍ୟାମସୁନ୍ଦର ॥ ମୋହ ନାମରତ୍ନ-ଗୀତା ଅଟଇ ଯେଣୁ ଏହୁ । ଦୀନକୃଷ୍ଣ ଦାସ ଏହା ଭାବରେ ଯେ କହୁ ॥

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀହରି ଅର୍ଜୁନ ସମ୍ବାଦେ ନାମ ପଞ୍ଚାଶୋଽଧ୍ୟାୟଃ ।

---

## ଏକାବନ ଅଧ୍ୟାୟ ।

### ଶ୍ରୀ ଭଗବାନୁବାଚ ।

ଅର୍ଜୁନ ଆଗରେ ଯେ କହନ୍ତି ଚକ୍ରପାଣି । ହେଜୁ ମନେ ଶୁଣ ଏବେ ପୃଥ୍ୱୀଷ୍ଟି ରଖାଇ ॥ ଈଶ୍ୱରେ ଯେ ଏହୁଭାବେ ମରିଛନ୍ତି କେତେ । ଆନ୍ତରିକ ନୋହେ ଅସ୍ଥି ପଡ଼ିଅଛୁ ଯେତେ ॥ ବ୍ରହ୍ମା ଦକ୍ଷ ଆଦି ଯେ ତଲବ କରିଆଣି । ଆଉ ଦେବ-ତାଙ୍କ ଅସ୍ଥି ନ ପାଇଲେ ଗଣି ॥ ଲୁହ ଲୁହ ହୋଇ ଅସ୍ଥି ପଡ଼ିଅଛୁ ଯେତେ । ତଲବରେ ନ ଖୋଜିଲେ ଗଣିବା କେମନ୍ତେ ॥ ଏତେ କହୁ ଗଣିକରି ଶୀବସ୍ତ ଯେ ଗଲା । ଈଶ୍ୱରାକାର ଛାମୁରେ ଦର୍ଶନ ଯାଇଁ କଲା ॥ କରଯୋଡ଼ି ଯୋଡ଼ଣ ଶୋଇଲା ମହୀରେ ତ ॥ ବୋଲେ ମରିଛନ୍ତି ବ୍ରହ୍ମା ଶତାନବେକୋଟି ॥ ପଞ୍ଚବିଂଶକୋଟି ଦକ୍ଷ ଗଣି ଦେଇ ଦକ୍ଷ୍ୟା । ସଦାଶିବ ମରିଛନ୍ତି ଶତସତ୍ତ ଗୋଷ୍ଠୀ ॥ ଇନ୍ଦ୍ର ସୂର୍ଯ୍ୟ ବରୁଣ ପବନ ଆଦି-ମୂଳେ । ଏମାନଙ୍କୁ ଗଣି ଆଉ ନ ପାରିଲି ତୁଲେ ॥ ଶୁଣିକରି ସନ୍ତୋଷ ହୋଇଲେ ଈଶ୍ୱରବୀର । ବଳରାମ ମୁଖ ଚାହିଁ ବୋଇଲେ ଉତ୍ତର ॥ ସାବଧାନ ହୋଇ ତୁ ହୋ ଶୁଣ ଶୂଳପାଣି । ଏତେ ଲୋକ ମରିବାର ଆମ୍ଭେତ ନ ଜାଣି ॥ ବଳରାମ ବୋଇଲେ ଶୁଣିମା ଆଦିପତି । ଯେତେକ ଦେବତା ତୁମ୍ଭ ଭକ୍ତି ଜାତ ହୋନ୍ତି ॥ ତୁମ୍ଭ ପ୍ରାୟ ପ୍ରଭୁ ଥାଉଁ ତାଙ୍କ ସାହା ନୁହ । କାହିଁ ପାଇଁ ମରନ୍ତି ଏ ମୋତେ ଫେଡ଼ି କହ ॥ ଈଶ୍ୱରାକାର ବୋଇଲେ ଏ ଯେତେ ଦେବଗଣ । ଆମ୍ଭ ଭକ୍ତି ଜନମି ବହୁ ଚଭୁରପଣ ॥

ମୋକ୍ଷ ପଦ ସେଇବାକୁ ବାଞ୍ଛା ଯହିଁ କଲେ । ଦର୍ଶନକୁ ଆସୁଁ ଆସୁଁ ଅଧବାଟେ ମଲେ । ଯେଉଁ ବ୍ରହ୍ମା ଅଛନ୍ତି ଭଣି ଅକ୍ଷୟ ଚରଣ । ଅଠର କଳପ ଯାଏ ତପ କଲେ ପୁଣ ॥ ବୋଇଲେ ଦେବ ସେଇବଇ ମୁହିଁ କଷ୍ଟ ପଦ । ତାହା ଜାଣି ଆମ୍ଭମାନେ ଜପ୍ତକଲା ଖେଦ ॥ ସନାତନ ବ୍ରହ୍ମାଙ୍କୁ ପେଷିଲୁଁ ଅମ୍ଭେ ସ୍ୱର୍ଗେ । ବୋଇଲୁଁ ତା ତପ ଭାଙ୍ଗି ଆସ ଯାଇଁ ବେଗେ ॥ ଆଜ୍ଞା ପାଇ ସନାତନ ବେଦବର ଗଲା । କୌଣସି ପ୍ରକାରେ ତପ ଭାଙ୍ଗି ନ ପାରିଲା ॥ ତେଣୁକରି ଶାପ ତାଙ୍କୁ ଦେଲୁଁ ଗୁରୁତର । ଷଢେଇସ୍ତ ବାରଯାଏ କାଟିବ ତୋ ଶିର ॥ ଶ୍ରୀରାମ ରୂପରେ ଅମ୍ଭେ ଜନମିଲୁଁ ମର୍ତ୍ତ୍ୟେ । ରାବଣରୂପରେ ତୁମ୍ଭେ ଜନମିବ ମର୍ତ୍ତ୍ୟେ ॥ ବନବାସଠାରେ ତହିଁ ହରନେବ ସୀତା । କଉଶଲ୍ୟା ମାତା ଅମ୍ଭ ଦଶରଥ ପିତା ॥ ସେ ଶ୍ରୀରାମ ତ୍ରେତାରେ ଯେ ହେବେ ଅବତାର । ଦ୍ୱାପରେ ଶ୍ରୀମତୀ ଯେ ଶ୍ରୀକୃଷ୍ଣ ତାଙ୍କ ବର ॥ ବକ୍ତନରେ ଜାତ ସେହ ଶ୍ରୀଶ୍ୟାମସୁନ୍ଦର । ମସ୍ତା ମୂର୍ଦ୍ଧ୍ୟ ସ୍ୱଇ ଆଜ୍ଞା ଦେଲେ ବେଣୁଧର ॥ ମୋକ୍ଷ ପଦ ସେଇବାକୁ କଲୁ ଯେବେ ଆଶ । ସତ୍ୟଯୁଗେ ତ୍ରେତାରେ ହୋଇବୁ ତୁ ନାଶ । ଶ୍ରୀହରି ବୋଇଲେ ପାର୍ଥ କହୁଅଛୁ ଏବେ । ଦୈତ୍ୟପାଳ ବ୍ରହ୍ମାଙ୍କ ସ୍ୱବଣେଶ୍ୱର ପୂର୍ବେ ॥ ଇସ୍ତକାର ତହିଁ ଅମ୍ଭେ ହସ୍ତ ଅବତାର । ଷଢେଇସ୍ ବାରଯାଏ କାଟିଏ ତା ଶିର ॥ କୋଟି ? ସତ୍ୟଯୁଗ ତ୍ରେତାୟୁଗ ଯାଏଁ । କୋଟିଏ ଦ୍ୱାପରଯୁଗ କଳିଯୁଗ ହୋଇ ॥ ଶାପ ଅନୁକ୍ରମେଣ ଯେ ହରନେଲା ସୀତା । କୃଷ୍ଣଦାସ ଭଣଇ ଏ ନାମଲହରୀଗୀତା ॥

ଇତି ଶ୍ରୀ ନାମଲହରୀଗୀତାୟାଂ ଶ୍ରୀହରି ଅର୍ଜୁନ ସମ୍ବାଦେ ନାମ ଏକାଦଶୋଽଧ୍ୟାୟଃ ।

---

## ବାଉନ ଅଧ୍ୟାୟ ।

### ଶ୍ରୀ କୃଷ୍ଣ ଉବାଚ ।

ଅର୍ଜୁନ ଆଗରେ ଯେ କହନ୍ତି ନନ୍ଦଲାଳ । ଏକମନେ ଶୁଣ ଏବେ ଯୁଧିଷ୍ଠିରଙ୍କ ଶାଳ । ଯେଉଁ ବଳରାମ ପାର୍ଥ ସର୍ପରୂପେ ଗଲା । ଭଗ୍ନକାର ଠାରେ ଯାଇଁ ପ୍ରବେଶ ହୋଇଲା ॥ ସେ ବଳରାମଙ୍କ ଅଙ୍ଗୁ ଯେବା ଧୁଏ ଜାତ । କହୁଁ ଅଛି ଥାଇ ଶୁଣ ବୀର ପାର୍ଥ ॥ କୋଟିଏ ଶୀତଳ ତେଜ ଉଦେ ହୋଇ ଥାଇ । ତେଣୁକରି ପ୍ରକୃତିକୁ ପାରନ୍ତି ସେ ଯାଇ ॥ ଆଉ ଯେତେ ଦେବା ଦେବୀ ନ ପଶନ୍ତି ପାଶ । ସେହୁ କୃଷ୍ଣ ତଳରେ ମେଘେ ଯାନ୍ତି ନାଶ ॥ ଏଥିଅନନ୍ତରେ ତୁ ହେ। ଶୁଣ ପାଣ୍ଡୁବଂଶି । ଇତାକାର ମୁଖ ଶୁଣି ବଳରାମ ପୁଚ୍ଛି ॥ ଏ ତୁମ୍ଭ ଛାମୁରେ ଅଛି ପଡ଼ିଅଛୁ ଯେତିକି । ବଡ଼ ଭାଗ୍ୟବନ୍ତ ମୁହିଁ କହୁଅଛୁ ତୋତେ ॥ ଇରାଦାର ବୋଇଲେ ଯେ ଶୁଣ ଅରେ ବୀରୁ । ଯେତେ ଅଛି ପୂଡ଼ିଅଛୁ ଶିବରଟି ହରୁ ॥ ଅମ୍ଭେ ଇନ୍ଦ୍ରା ଗଲେ ସେ ଯେ ତଥାଇଁଣ ଥାନ୍ତି । ଅମ୍ଭ ଇନ୍ଦ୍ରା ଭାଙ୍ଗିଲେ ସମସ୍ତେ ନାଶ ଯାନ୍ତି ॥ ଯେତେ ଅଛି ପଡ଼ିଛୁ ସମସ୍ତେ ଇରଞ୍ଜନ । ଅମ୍ଭ ପଦ ସେଇବାକୁ କଲେ ଯହିଁ ମନ ॥ ତେଣୁକରି

ଏମାନେ ଅଛନ୍ତି ମୃତ୍ୟୁ ପାଇ । ଆମ୍ଭେ ଛାଡ଼ିଗଲେ ସର୍ବେ ଉଠିବେ ତହିଁ ॥
ମୋର ପଦ ଛେଦିବାକୁ ପବନ ଯେ ଗଲା । ସୁରଗିରି ପର୍ବତରେ ବସି ତପ କଲା ॥
ସାତକଳ୍ପ ପର୍ଯ୍ୟନ୍ତେ କଲାକ ସେ ତପ । ତାହା ଜାଣି ଆମ୍ଭ ମନେ ଉପୁଜିଲା କୋପ ॥
ଶତବଦନ ବ୍ରହ୍ମାଙ୍କୁ ଆଜ୍ଞାଦେଲୁଁ ପୁଣ । ତୁ ଯାଇଁ ପବନକୁ ବେଗେ ଚଳାଇ ଆଣ ॥
ତାହା ବୋଲି ପବନ ନ ଚଳା ଚଳାଇଲେ । ଲେଉଟି ଆସିଣ ବ୍ରହ୍ମା ଜଣାଇଲା
ମୋତେ ॥ ବୋଇଲା ପବନ ମୁଁ ଯେ ତପ କରୁଅଛୁ । ତୁମ୍ଭ ଆଜ୍ଞା ମହାପ୍ରଭୁ ନ
ମାନିଲୁ କହୁ । ଏହା ଶୁଣି ପବନକୁ ମନେ ତାପ କଲୁଁ । ଶଙ୍ଖ ଚକ୍ର ଗୋଟି ଅନ୍ତରେ
ପେଷିଣ ଦେଲୁ ॥ ଏମନ୍ତେ ଜେ ମହାପ୍ରଭୁ ଶ୍ରୀମତୀରମଣ । ପବନ କହିଲା ଯାଇଁ
ତାହାଙ୍କ ଆଗେଣ ॥ ମୋର ନାମରତ୍ନଗୀତା ରସ ଅଟେ ସେହୁ । ଦୀନକୃଷ୍ଣ ଦାସ ଏହା
ଭାବେ ମହାବାହୁ ॥

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀହରି ଅର୍ଜ୍ଜୁନ ସମ୍ବାଦେ
ନାମ ବାଉନୋଽଧ୍ୟାୟଃ ।

---

## ତେପନ ଅଧ୍ୟାୟ ।

### ଶ୍ରୀକୃଷ୍ଣ ଉବାଚ ।

ଅର୍ଜ୍ଜୁନ ଆଗରେ ଯେ କହନ୍ତି ବନମାଳୀ । ଶୁଣ ଏବେ ଅର୍ଜ୍ଜୁନ ହୋ
କୃଷ୍ଣର ଯେ କେଳି ॥ ଦେଖୁ ସେ ଶ୍ରୀକୃଷ୍ଣ ପ୍ରଭୁ ଶ୍ରୀଶ୍ୟାମସୁନ୍ଦର । ଶ୍ରୀମତୀ କରନ୍ତେ
ସେହୁ ହୋଇଣ ଆତୁର ॥ ଆଜ୍ଞା ପାଇକରି ଚକ୍ର ବେଗେ ଚଳିଗଲା । ଅଣଚାଶ ଖଣ୍ଡ
କରି କାଟି ପକାଇଲା ॥ ତପ ଦଣ୍ଡ କଲା ମୁନି କଶ୍ୟପର ବସ୍ତି । ଅଣଚାଶରୂପେ
ମୋତେ ସ୍ତୁତି କରୁଅଛୁ । ତାରାକାର ବଚନେ ବୋଇଲେ ବଳରାମ । ଅଣଚାଶ
ପବନର କହ କହ ନାମ ॥ ଏକଥା ହଜୁରି ମୋତେ କହିବା ଗୋସାଇଁ । ଅନାଦି
ବୋଇଲେ ଶୁଣ ଏକମନ ହୋଇ ॥ ଅଣଚାଶ ପବନର ନାମ ଦେବା କହି । ଶୁଣ
ତୁ ହୋ ପାଣ୍ଡୁସୁତ ଏକମନ ହୋଇ ॥ ପ୍ରଥମେ ମରୁତ ଯେ ମାରୁତ ଏକମୂର୍ତ୍ତି ।
ବହନ ଶୋଷଣ ଯେଉ ହୋଏ ଗତିମୂର୍ତ୍ତି ॥ କଦଳ ଯେ ବସନ୍ତ ମଳୟ ସୁରଶ୍ରେଷ୍ଠ ।
କୋମଳ ପବନ ଯେଉ ହୋଇଲାକ ଅଷ୍ଟ ॥ ପ୍ରଳୟ ପବନ ତାପ ଗମନକୁ ଛଡ଼ି ।
ପବମାନ ଗଗନ ପ୍ରଚଣ୍ଡ ଅନ୍ଧକାର ॥ ମାୟାଧର ପବନ ଯେ ମହାଘୋର ମୂଳେ ।
ପୁଷ୍ପଧର ପବନ କହିଲୁଁ ତୋତେ ଠୂଳେ । ସେତୁମାନ ପବନ ମଉଳି ଅନ୍ଧକାର ।
ଶଶଧର ହେମଧରି ହୋଇଲେ ଯେ ସ୍ଥିର ॥ ବଜ୍ରଧର ଶୋଭାକର ଚତୁର୍ଦ୍ଦିଗ ବ୍ୟୂହ ।
ଶୂନ୍ୟଧର ଏଥିଁ ଶୂନ୍ୟ ମୋହବଶୀ ତତ୍ତ୍ୱ ॥ ଚନ୍ଦନଧର ପବନ ପାଣିଧର ଦେଖ ।
ମହାକନ୍ଦ ପବନ ଯେ ଜଗଧର ଯେଉ ॥ କୋପଧର ମହୀଧର ଦଣ୍ଡବନ୍ଧ ମୂଳେ ।
କେତୁଧାର ପବନ ସେ ଶ୍ୟାମପାଣି ତୁଲେ ॥ ମାୟାଧର ପବନ ଯେ ଦ୍ୱୀପଧର ଦେଖ ।
କ୍ଷିତିଧର ପବନ ଯେ ଜଳଧିକୁ ଯେଉ ॥ ଶଙ୍ଖ ନାମେ ପବନ ଯେ ମହାବାହୁ ତୁଇ ।

ପ୍ରାଣ ଉପାନ ପବନ ଧାଇଯାଇ ହୋଇ ॥ ଅମଖଲା କେଶଧର ହଳଧର ଭାଇ । ସେହୁମାର ଶିଙ୍ଖେଶ୍ୱର ଅମୃତାକ୍ଷ ଘେନ ॥ ମେଘନାଦ ପବନ ଗର୍ଜନନାଦ ମୂଳେ । ଅଣବୃଣ ପବନ ହୋଇଲାଟିବ ଠୂଲେ ॥ ଅଠରପବନ ତତ୍ତ୍ୱ ସ୍ୱର୍ଗଲୁ ଯେ ଗଲା । ଖୋଲକୋଷ୍ଠା ପବନ ଯେ ଯାହାଲେ ରହିଲା ॥ ଏଗାରପବନ ଆମ୍ଭେ ଲୁହାଇଲୁ ମଞ୍ଚେ ॥ ବ୍ୟରପବନଙ୍କୁ ବ୍ୟରମେସେନେ ଲେ ସଞ୍ଚେ ॥ ଅଣବୃଣ ପବନ ଯେ ବାନ୍ଧି ଦଅ ଗଲେ । ବଳରାମ ଆଗେ ଏହା ଅନାଦ କହିଲେ ॥ ସାବଧାନ ହୋଇ ଶୁ ହୋ ଶୁଣ ପାଣ୍ଡୁ ଶିଷ୍ୟ । ଅଣବୃଣ ପବନର କହିଲି ସନ୍ଦେଶ ॥ ଏଥୁ ଅନନ୍ତରେ ଶୁ ହୋ ଶୁଣ ମଦ୍ଧ୍ୟସାର । ଭସ୍ମକାର ମୁଖ ବୃନ୍ଦ ବଳସ୍ୱାମ ପୁଚ୍ଛି ॥ ସାବଧାନ ହୋଇ ତୁମ୍ଭେ ଶୁଣ ଆଦମୂଳ । ଚନ୍ଦ୍ର ସୂର୍ଯ୍ୟ ପବନ ଯେ ଦଶଦିଗପାଳ ॥ ଅମାବାସ୍ୟା ସଙ୍କ୍ରାନ୍ତି ସାତବାର ତଇ । ବାୟୁ ଜାତ ହୁଅନ୍ତି ଏ କହ ତଥ୍ୟ କଇ । ଉଗାକାର ବୋଇଲେ ଏ ମୋତଠାରୁ ଜାତ । ବ୍ରହ୍ମା ବିଷ୍ଣୁ ମହେଶ୍ୱର ଦେବୀ ଦେବମାତ ॥ ମୁହିଁ ଜାତ ହୋଇଲଇଁ ମୋହର ଯେ ଗର୍ଭେ । ଯାହାକୁ ଥୋଇଲି ଯହିଁ କହଦେବା ଏବେ ॥ ଲକ୍ଷେଯୋଜନରେ ଭାନୁ ଦୁଇଲକ୍ଷେ ଶଶୀ । ତିନିଲକ୍ଷେ ତାରା ଚାରିଲକ୍ଷେ ଧ୍ରୁବ ବସି ॥ ପାଞ୍ଚଲକ୍ଷ ଯୋଜନେ ଯେ ଯମ ନୃପବର । ଷଡ଼ଲକ୍ଷ ଯୋଜନେ ସ୍ଥାପିଲି ସୁନାଶୀର ॥ ସାତଲକ୍ଷ ଯୋଜନରେ ଧନପତି ସୀମା । ଅଠଲକ୍ଷ ଯୋଜନେ ଥୋଇଲି ଦେବବ୍ରହ୍ମା ॥ ଏହା ଜାଣି ଶ୍ରୀମହୀରମଣ ମୋତେ ପୁଣ । ଆଜ୍ଞା ଦେଲେ ତୁମ୍ଭେ ଏବେ ଶୁଣ ନାରାୟଣ ॥ ସପ୍ତଦଶ ଅଙ୍କ ଯେହ୍ନେ କାଳେ ହେବ ପୁଣ । ଯୁଧିଷ୍ଠିର ଜନ୍ମିଥିବେ ଦେବସିଂହ ଜାଣ । ମୋହ ନାମରତ୍ନଗୀତା ମନେ କର ସାର । ଦୀନକୃଷ୍ଣ ଦାସ ଏହା ହୃଦରେ ଧର ॥

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀହରି ଅର୍ଜୁନ ସମ୍ବାଦେ ନାମ
ଭେଦନୋଽଧ୍ୟାୟଃ ।

---

ଉନବିଂଶଅଧ୍ୟାୟ ।

ଶ୍ରୀକୃଷ୍ଣ ଉବାଚ ।

ଅର୍ଜୁନ ଅଗ୍ରେ ଯେ କହନ୍ତି ନାରାୟଣ । ଏକମନେ ଶୁଣ ତୁ ହୋ ପାଣ୍ଡୁର ନନ୍ଦନ ॥ ନବଲକ୍ଷ ଯୋଜନ ସେ ଚନ୍ଦ୍ରମା ନନ୍ଦନ । ଦଶଲକ୍ଷ ଯୋଜନେ ଦେବତାଗଣ ଜାଣ । ଉଗାକାର କଇନ ସେମାନେ ନ ମାନନ୍ତି । ଉଠନ୍ତି ବସନ୍ତି ସେମାନେ ଅନ ହୁଅନ୍ତି । ଅନନ୍ତେଙ୍କୁ ଦଶଲକ୍ଷ ଯୋଜନ ଯେ ଶିଖ । ସେହି ପାବସ୍ଥରେ ଯେ ଥୋଇଲେ ଦଶଲୋକ । ଏବେ ବୋଲି ଉଗାକାର ସନ୍ତୋଷ ହୋଇଲେ । ବର ମାଗ ବୋଲି ବଳରାମଙ୍କୁ ବୋଇଲେ ॥ ଅକ୍ଷୟବର ମାଗନ୍ତେ ଅଳନ୍ଦ ସେ ହେଲେ । ବାମକୂଳ ତଳେ ବଳରାମଙ୍କୁ ଥୋଇଲେ ଶ୍ରୀହରି ବୋଇଲେ ତୁ ହୋ ଶୁଣସି ଅର୍ଜୁନ । ଉଗାକାର ଦେହେ ଲୀନ ହେଲେ ବଳରାମ ॥ ଆବର କଥାଏଁ ତୁ ହୋ

ଶୁଣ ମହାବୀର । ଚନ୍ଦ୍ର ସୂର୍ଯ୍ୟ ଦୁହିଙ୍କି ପେଷିଲେ ନିରାକାର । ବୋଇଲେ ହୋ ତୁମ୍ଭେ ଯିବ ଏ ତିନିଭୁବନ । ଉଦେ ହୋଇ ଦୁଷ୍ଟ ଅବପାପ ପୁଣ୍ୟମାନ । ଶାପ ପାଇ ସେମାନେ ଯେ ସବୁଦିନେ ଦୁଃଖୀ । କୃଷ୍ଣପଦ ସେବିବାକୁ ହେଉଥାନ୍ତି ସୁଖୀ ॥ ଆବର କଥାଏ ପାର୍ଥ ଶୁଣ ଅନୁପାମ । ପୂର୍ବେ ଏକ ଚନ୍ଦ୍ର ଯେ ବଦନେଶ୍ୱର ନାମ ॥ କୃଷ୍ଣ ପଦ ସେବିବାକୁ କଲା ଯୋଗତପ । ଶୁଣିକରି ନିରାକାର ମନେ କଲେ କୋପ ॥ ସେତୁସାର ବ୍ରହ୍ମାଙ୍କ ସେ ପାଶକୁ ଡାକିଲେ । ଚନ୍ଦ୍ରମାକୁ ସେବି- ଅଛ ବୋଲି ଆଜ୍ଞା ଦେଲେ । ଆଜ୍ଞା ପାଇ ସେତୁସାର ଚଳିଗଲେ ବେଗ । ତାହାଙ୍କୁ ଦେଖିଣ ଯେ ଚନ୍ଦ୍ରମା କଲା ରାଗ ॥ ବୋଇଲା ମୁଁ କାହିପାଇଁ ଯିବି ତାଙ୍କଠାରେ । ଲକ୍ଷେ ଯୁଗଯାଏ ତପ କରୁଅଛୁ ଏବେ ॥ କୃଷ୍ଣ ପଦ ସେବିବାକୁ ଅଛୁ ମୋର ମନ । ଆଉ କାହିଁ ପାଇଁ ତାଙ୍କ କରିବି ଦର୍ଶନ ॥ ଏ ବଚନ ଶୁଣି ସେତୁସାର ବ୍ରହ୍ମା ଗଲା । କରପଦ୍ମ ଯୋଡି କୃଷ୍ଣ ସମ୍ମୁଖରେ କହିଲା । ବୋଇଲା ସେ ତୁମ୍ଭ ପଦ ସେବିବ ଗୋସାଇଁ । ନିଶ୍ଚୟକରି ଦର୍ଶନକୁ କଲା ଏବେ ନାହିଁ ॥ ଶୁଣି ନିରାକାର ପ୍ରଭୁ ମନେ କଲେ ରୋଷ । କାଳଚକ୍ର ପେଷିଣ ଚନ୍ଦ୍ରକୁ କଲେ ନାଶ ॥ ନିଶ୍ଚୟକରି ଚନ୍ଦ୍ରମା ଯେ ସେ ଦିନରେ ମଲା । ଅମାବାସ୍ୟା ବୋଲି ତାର ନାମେକ ହୋଇଲା ॥ ଶ୍ରୀ ଅଙ୍ଗରେ ନିରାକାର କଲେ ତାକୁ ଲୀନ । ନିଶ୍ଚୟକରି ଉଦେ ନୁହେ ଅମାବାସ୍ୟା ଦିନ ॥ ଅଶେଷ ବ୍ରହ୍ମାଣ୍ଡନାଥ ହୃଦେ ନାହିଁ ମାୟା ॥ ପଛକରି ଶମ୍ଭୁକୁ କରନ୍ତି ମହା- ଦୟା । ଯୁଗିହିଁ ଶ୍ରୀଅଙ୍ଗ ତାକୁ କାଢିଲେ ଗୋସାଇଁ । ଅନୁଗ୍ରହ କଲେ ସେ ପ୍ରସନ୍ନ- ମୁଖ ହୋଇ ॥ ବୋଇଲେ ତୁ ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଥିବୁ । ପନ୍ଦରଦିନରେ ଛୁଇ- ପକ୍ଷେକ ବଢିବୁ । ଯେଉଁଦିନ ଚନ୍ଦ୍ର ତୋତେ କରିଲୁଁ ଛେଦନ । ସେହିଦିନ ଆମ୍ଭ ଅଙ୍ଗେ ହେଉଥିବ ଲୀନ ॥ ଅମାବାସ୍ୟା ଦିନ ତୁହି ନୋହିବୁ ଯେ ଦୃଶ୍ୟ । ତାର ହୋଇଥିବୁ ଆମ୍ଭ ଶ୍ରୀଅଙ୍ଗରେ ପଶି ॥ ଜଗତରେ କେହି ତୋର ନ ଚାହିଁବେ ମୁଖ । ଦ୍ରୋହ କର୍ମ କଲୁ ଯେବେ ପାଇବୁଟି ଦୁଃଖ ॥ ଚନ୍ଦ୍ରବପୁ ଛୁଇବାକୁ ସ୍ପର୍ଶ ଉଆ- ଇଲେ । ପାପ କ୍ଷୟ ଯିବାକୁ ଦିବସ ପୁଣ କଲେ ॥ ସ୍ତୁତି ନିରାକାର ତାଙ୍କ ଯାଚି ଦେଲେ ବର । ସମସ୍ତଙ୍କ ସ୍ୱବଦାନ ଦିଅ ଶଶଧର ॥ ଶୁଣିକରି ଚନ୍ଦ୍ରମା ହୋଇଲେ ମନେ ତୋଷ । ନାମରତ୍ନଗୀତାରେ ବର୍ଣ୍ଣିଲେ କୃଷ୍ଣଦାସ ॥

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀହରି ଅର୍ଜୁନ ସମ୍ବାଦେ ନାମ
ଚଉବନୋଽଧ୍ୟାୟଃ ।

---

## ପଞ୍ଚାବନ ଅଧ୍ୟାୟ ।

### ଅର୍ଜୁନ ଉବାଚ ।

ଅର୍ଜୁନ ବୋଇଲେ ତୁମ୍ଭେ ଶୁଣ ଦାଶରଥି । କେତେବେଳେ ହେଲା ବୃଷ୍ଟି ହେଲା କେ ନୃପତି । କେଉଁ ଦେଶର ସେ ଅଟଇ କେଉଁ ନାମ । ଏ କଥା ବୁଝାଇ

କହ ପୁରୁଷଉତ୍ତମ ॥ ଶ୍ରୀକୃଷ୍ଣ ବୋଇଲେ ଶୁ ହେ ଶୁଣ ବୁଦ୍ଧିମନ୍ତ । ସିଦ୍ଧ ନାମେ ପୃଥ୍ୱୀ ଯେ ପ୍ରଥମେ ହେଲା ଜାତ ॥ କୋଟିଏ ବେଳ ଜନମି ସେହୁ ଗଲା କ୍ଷୟେ । ସେ ମେଦିନୀ ପୃଥ୍ୱୀ ଜାତହେଲ କୋଟି ଯାଏ ॥ ମହୀ ନାମେ ପୃଥିବୀ ଯେ ଉତ୍ପୁଜିଲା ପୁଣି । ତିନିକୋଟି କାଳ ନାଶ ଗଲା ସେ ଧରଣୀ ॥ ବସୁ ନାମେ ପୃଥିବୀ ହୋଇଲା ପୁଣ ଜାତ । ଚାରିକୋଟି କାଳ ନାଶ ଗଲା ସେହୁ ପାର୍ଥ ॥ ଭୂମି ନାମେ ଏକ ପୃଥ୍ୱୀ ଜାତ ଯେ ହୋଇଲା । ପାଞ୍ଚକୋଟି ବେଳ ଜନ୍ମି ସେହୁ ନାଶ ଗଲା ॥ ଏମନେକ ପୃଥ୍ୱୀ ଅତ୍ୟାତ ହୋଇଛନ୍ତି । ଶ୍ରୀହରି ବଚନ ଶୁଣି ଅର୍ଜୁନ ବୋଲନ୍ତି ॥ ସାବଧାନ ହୋଇ ତୁମ୍ଭେ ଶୁଣ ନନ୍ଦବଳା । ଜଳରେ କେବଣ ମହୀ ହୋଇଥିଲା ବେଳା ॥ କେବଣ ପ୍ରକାରେ ସେ ରହଇ କେଉଁଭାବେ । ଏ କଥା ଈଶ୍ୱର ମୋତେ କହ ବୁଝାଏବେ । ଶ୍ରୀହରି ବୋଇଲେ ସେ ଯେ ଶରୀରାତ ବୃନ୍ଦ । ଆପଣା ଦେହରୁ ଉପୁଜିଲେ ଏକ ଲୋମ ॥ ମେରୁ କରି ମଧ୍ୟରେ ସେ ଯୋଡିଲେକ ଯହିଁ । ସ୍ଥିର ହୋଇଲା ପୃଥ୍ୱୀ ନ ଚଳିଲ ତହିଁ ॥ ଯେତେ ଗୋଷ୍ଠା ପୃଥିବୀ ହୋ ତେତେ ଗୋଷ୍ଠା ମେରୁ । ଏ କଥାରୁ ଅର୍ଜୁନ ସନ୍ଦେହ କେତେ କରୁ । ଅର୍ଜୁନ ବୋଇଲେ ଶୁଣ ପୁରୁଷଉତ୍ତମ । କେବଣ ମେରୁର ପ୍ରଭୁ କେଉଁଭାବେ ନାମ ॥ ଶ୍ରୀହରି ବୋଇଲେ ଯେ ପ୍ରଥମେ ମେରୁ ଜାତ । ଶତଶିଂହ ବୋଲି ତାହେ ନାମ ତାର ପାର୍ଥ ॥ ପଦ୍ମଶିଂହ ବୋଲି ଜରି ଏକ ମେରୁ ହୋଏ । ଶ୍ରୀଧର ବୋଲିଣ ନାମ ଶୁଣ ଧନଞ୍ଜୟେ ॥ କମ୍ବୁଧର ବୋଲି ପୁଣି ମେରୁ ହୋଏ ଜାତ । ମହୀଧର ପଦ୍ମଧର ବେଭି ମେରୁ ପାର୍ଥ ॥ ଆଉ ମେରୁ ନାମ ଯେ ଦଣ୍ଡଧର କହ । ସୃଷ୍ଟିଧର ନାମେ ମେରୁ ଉପୁଜିଲ ମହୀ । ଏକ ଏକ କରି କେତେ ବୁଝାଇବା ପାର୍ଥ । ଯେତେ ମେରୁ ତେତେ ପୃଥ୍ୱୀ ହୋଇଥାଇ ଜାତ । ଅର୍ଜୁନ ବୋଲନ୍ତି ତୁମ୍ଭେ ଶୁଣ ମହାଗୁରୁ । କେତେ ପୂର୍ବେ ଥାଇ ପୁଣ କେତେଗୋଷ୍ଠା ମେରୁ ॥ ଶ୍ରୀହରି ବୋଇଲେ ତାହା କେ କହିବ ଅନ୍ତ । ଅନନ୍ତ କୋଟି ବ୍ରହ୍ମାଣ୍ଡେ ମେରୁହିଁ ଅନନ୍ତ ॥ ଅନନ୍ତ ଯେ ଖେଳ ଏବେ ହେଉ ଚନ୍ଦ୍ର ଧ୍ୱେଇ । ସପ୍ତଦଶ ଅଙ୍କେ ଜାତ ସନ୍ଥ ଉପୁଜଇ । ପାପୀ ଲୋକମାନେ ପୁଣ ନାଶଯିବେ ଜାଣ । ମୋତ ସୂର୍ଯ୍ୟ ଜାତ ହେବେ ପୃଥିବୀ ମଧ୍ୟେଣ ॥ ମୋହ ନାମରତ୍ନ ଗୀତା ଅମୃତ ଯେ ସାର । ଦୀନକୃଷ୍ଣ ଦାସ ଏହା କରଇ ପ୍ରଚାର ॥

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀହରି ଅର୍ଜୁନ ସମ୍ବାଦେ
ନାମ ପଞ୍ଚାବତୋଽଧ୍ୟାୟଃ ।

---

## ଛପନ ଅଧ୍ୟାୟ ।

ଶ୍ରୀକୃଷ୍ଣ ଉବାଚ ।

ଅର୍ଜୁନ ଆଗରେ ଯେ କହନ୍ତି ଭଗବାନ । ଏକମନେ ଶୁଣ ଏବେ ଯୁଧିଷ୍ଠିର ସାନ ମନ୍ଦ ଦ୍ୱୀପମାନଙ୍କରୁ ରତ୍ନଦ୍ୱୀପ ସାର । ଅର୍ଜୁନ ବୋଇଲେ ତାହା କହ ମୋ

ଅଗର ॥ ତାହୁଁ ଜାତ ହୋଇଲ ସେ ରତ୍ନଦ୍ୱୀପ ମହୀ । ଏକଥା ଗୋଟିକ ମୋତେ ଦେଖନ୍ତିକ କହ ॥ ଶ୍ରୀହରି ବୋଇଲେ ଯାହା ପ୍ରଶ୍ନ କଲ । ପଦ୍ମନାମେ ସାଗର ମେରୁକୁ ବାନ୍ଧ କଲ ॥ ମେରୁକୁ ଉପାଡ ସେହୁ ସୋଡିଦବା ବେଳେ । ଖଣ୍ଡିଏ ଖଣ୍ଡିଏ ତହୁଁ ପଡିଲାକ ତଳେ ॥ ଦେବଗଣେ ବୋଇଲେ ଯେ ଏହୁଠାରେ ଥାଉ । ବଇକୁଣ୍ଠ ରୂପକୁ ଜିନ ଅଶନ ଏ ହେଉ ॥ ରତ୍ନଦ୍ୱୀପ ବୋଲି ନାମ ଅଛଇ ଯେ ତାର । ଆୟତାଳ ହୋଇଲାକ ଦଶକୋଟି ବାର ॥ ସେ ପର୍ବତ ତଳେ ଏକ ଦେଉଳ ଯେ ଶୋଭା । ତେର ଯୋଜନରେ ସେ ଯେ ପାଞ୍ଚସ୍ତମ୍ଭ ଉଭା ॥ ସେ ଦେଉଳ ଉପରେ ଯେ ପତାକା ଘଣ୍ଟଣ । ମଧ୍ୟଧ୍ରୁବ ଯେ ଦେଉଳ ତହିଁର ଚଳେଣ ॥ ଚାରିଲକ୍ଷ ଯୁଗ ଗଲେ ପାଣ୍ଡୁର ତନୁଜ । ତେତେବେଳେ ଦିଶିବ ସେ ଦେଉଳର ଧ୍ୱଜ ॥ ତେତିଶ କୋଟି ଦେବତା ସେ ଦେଉଳେ ବସି । ଦିବ୍ୟଭୋଗ ଭୁଞ୍ଜିବେ ଅମରପୁରୀ ଆସି ॥ ରତ୍ନଦ୍ୱୀପ ଦେଉଳର ମହିମା ଯେମନ୍ତ । ଦେବ ମାନବେ ତାହାର ନ ପାବନ୍ତି ଅନ୍ତ ॥ ଚାରିମୁଖରେ ବ୍ରହ୍ମା ବଖାଣିଲେ ଅଲକ୍ଷ । ଭୂତଖଣ୍ଡ ମଧ୍ୟରେ ଛେଦିଲେ ସର୍ବ ଦୁଃଖ ॥ ଈଶ୍ୱର ପଞ୍ଚବଦନେ ନ ପାରିଲେ କହି । ଆଉ କେ କହିବ ତା ମାନବ ଦେହ ବହି ॥ ବେଦ ପୁରାଣ ଅଛଇ ଷାଠିଏ ସହସ୍ର ଗ୍ରନ୍ଥ । ନଉଲକ୍ଷ ଶାସ୍ତ୍ର ଅଟେ ଷାଠିଏ ସହସ୍ର ॥ ଲକ୍ଷେ ଭଣ୍ଡୀଗ୍ରନ୍ଥ ଯେ ଅଛଇ ବିଦ୍ୟମାନ । ଯେଉଁଠାରେ ଜାତ ହୋନ୍ତି ସେହୁଠାରେ ଲୀନ ॥ ଅର୍ଜୁନ ବୋଇଲେ ପ୍ରଭୁ ପଚାରୁଛି ତୋତେ । ରାବଣକୁ କେ ମାଇଲା ଏହା କହ ମୋତେ ॥ ଶ୍ରୀହରି ବୋଇଲେ ପାର୍ଥ ସାବଧାନେ ଶୁଣ । ରାବଣକୁ ମାଇଲେ ପଦ୍ମନାନାରାୟଣ ॥ ଅର୍ଜୁନ ବୋଇଲେ ତୁମ୍ଭେ ଶୁଣ ଜଗନ୍ନାଥ । ସେ ପଦ୍ମଗନ୍ଧାଣୀ ପୂର୍ବେ କେଉଁପରି ଜାତ ॥ ଶ୍ରୀହରି ବୋଇଲେ ତାହା କହୁଦେବା ତୋତେ । ଅତିକଷ୍ଟରେ ଯେ ହାଦେ ପୁଚ୍ଛା କଲୁ ମୋତେ ॥ ସୂର୍ଯ୍ୟେଶ୍ୱର ବୋଲି ଏକ ରାଜା ଏ ଉତ୍ତମ । ତାହାର ନନ୍ଦନ ଯେ ମଦନପାଳ ନାମ ॥ ଯେଉଁ କାଳେ ପ୍ରେମଲଜ ହେବ ଭିରନ୍ତର । ସେ କାଳର ମହିମା ଶୁଣ ହେ ଧନୁର୍ଦ୍ଧର ॥ ତୋର ନାମ ବିଦ୍ୟାଧର ହୋଇବ ପ୍ରମାଣ । ପାରଦ୍ୱୀପ ନୃପତି ତୁ ଥିବୁ ଯେ ତୋଇଁଣ ॥ ମୋହ ନାମରତ୍ନଗୀତା ଅମୃତ ଅଛଇ । କୃଷ୍ଣଦାସ ଭଣଇ ଯେ ହେଲୁ ଚିତ୍ତ ଦେଇ ॥

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀହରି ଅର୍ଜୁନ ସମ୍ବାଦେ ନାମ
ଛପନୋଽଧ୍ୟାୟଃ ।

---

## ସତାବନ ଅଧ୍ୟାୟ ।

ଶ୍ରୀ ଭଗବାନୁବାଚ ।

ଅର୍ଜୁନ ଅଗରେ ଯେ କହନ୍ତି ନନ୍ଦବଳା । ଶୁଣ ହେଲୁ ଚିତ୍ତ ଦେଇ କୃଷ୍ଣର ଯେ ଲୀଳା ॥ ସେ ରାଜାର ଅଯୋଧ୍ୟା କଟକ ନାମେ ପୁରୀ । ତହିଁର ନୃପତି

ଦଶରଥ ଦଣ୍ଡଧାରୀ ॥ ତାହା କୋଳେ ଉପୁଜିଲେ ଏ ଚାରି କୁମର । ଶ୍ରୀରାମ ଲକ୍ଷ୍ମଣ ଭରତ ଶତ୍ରୁଘନ ବୀର ॥ ଯନ୍ତ୍ରୀ ସେ ପଦ୍ମନାଭ ଧାରୀ ଜନ ବିଷ୍ଣୁ ରୂପ । ମହାଦେବ ତାଙ୍କ ସେବା କଲେ ସାତକଳ୍ପ ॥ ପ୍ରସନ୍ନଚିତ୍ତରେ ଆଜ୍ଞା ଦେଲେ ଭଗବାନ । ବୋଇଲେ ଯେ ମହାଦେବ ମାଗ ମୋତେ ବର ॥ ମହାଦେବ ବୋଇଲେ ହେ ଦ୍ଦ ବର ମାଗିବି । ଗୋକୁହତ୍ୟା କରିଅଛୁ କେମନ୍ତେ ତରିବି ॥ କଇଲାସ କନ୍ଦରେ ଯେ ରହୁଥିଲି ବସ୍ତା । ସ୍ୱାହାତେ ମାଇଲି ପ୍ରଭୁ କର ମୋତେ ରକ୍ଷା ॥ ସେ ବସ୍ତା କଣ୍ଠରେ ରହିଅଛୁ ଅଜ୍ଞଯାଏ । କେମନ୍ତେ ମୁକତି ହେବ କହ ଦେବରାୟେ ॥ ଅନାଦି ବୋଇଲେ ପାପ ହେବ ତୋର ହତ । ଶ୍ରୀରାମ ସଙ୍ଗେ ଲକ୍ଷ୍ମଣ ରୂପେ ହେବୁ ଜାତ ॥ ଯେଉଁ ବସ୍ତା ତୋହ କଣ୍ଠେ ଅଛୁ ପଶୁପତି । ପୂର୍ବଜନ୍ମେ ହେବ ସେ ରାବଣଦୈତ୍ୟ ଶକ୍ତି ॥ ବନବାସ ଯିବେ ସେ ଯେ ରାମ ଜଗନ୍ନାଥ । ରାବଣ ଯେ ହରିନେବେ ଜନକଦୁହିତା ॥ ଲଙ୍କାପତି ସଙ୍ଗେ ଯୁଦ୍ଧ କରିବୁ ତୁ ଘୋର । ହୃଦରେ ପଡିବ ତୋର ଶକତି ଯେ ଶର ॥ ତେବେ ଯାଇଁ ମୁକତି ହୋଇବୁ ପଶୁପତି । ସେ ବସ୍ତା ଯେ ହୋଇଥିବ ରାବଣ ଶକତି ॥ ହୃଦରେ ପଡିଲେ ତୋର କ୍ଷୟ ଯିବ ପାପ । ଗୁଣିବର ଇଶ୍ୱର ଛାଡିଲେ ମନୁ ତାପ । ଅର୍ଜୁନ ବୋଇଲେ ପ୍ରଭୁ ଗୁଣିମା ଗୋସାଇଁ । ତ୍ରେତୟା ଯୁଗରେ ଦଶରଥ ନରସାଇଁ ॥ ଶ୍ରୀରାମ ଲକ୍ଷ୍ମଣ ହୋଇଥିଲେ ତାର ଶିଷ୍ୟ । କେଉଁ ତପ କରି ପୂର୍ବେ ହୋଇଥିଲେ ବିଷ ॥ ଶ୍ରୀହରି ବୋଇଲେ ଶେଷ ପଚ୍ଛେ ଉତକର୍ମୀ ॥ ବିଷ୍ଣୁ ପୂଜା କଲେ ସେ ଯେ କେଭୁଧର ବ୍ରହ୍ମା ॥ ଭଗବାନ ପ୍ରଭୁ ତାକୁ ପଚାରିଲେ ଧନେ । ପୂଜାବେଳେ କେଉଁ କଥା ବିଚାରିଲ ମନେ ॥ କେଭୁଧର ବୋଇଲେ ମୁଁ ନ ଜାଣଇଁ ଆନ । ତୁମ୍ଭ ପଦ୍ମପାଦେ ମୋର ଅନ୍ତରରେ ଧ୍ୟାନ ॥ ଆଉ କେଉଁ କଥାରେ ପଶିବ ମୋର ଚିତ୍ତ । ତୁମ୍ଭେ ତାହା ନ ଜାଣ ହ ଅନ୍ତର୍ଯାମିନାଥ ॥ ଅନାଦି ବୋଇଲେ ଅମ୍ଭେ ଜାଣୁ ସର୍ବକଥା । କହିଲେତ ମନକୁ ଲାଗିବ ବଡ଼ ବ୍ୟଥା ॥ ବୋଇଲ ଯେ ବିଷ୍ଣୁଙ୍କୁ ସେବିଲେ ବିଷ୍ଣୁ ହୋଇ । ତେବେ ସିନା ଜନମ ଯେ ସଫଳକୁ ପାଇ ॥ ଏମନ୍ତ ବୋଲିଣ ମନେ କଲୁ ଯେ ବିଚାର । ମିଛ ବୋଲି ଅମ୍ଭଙ୍କୁ କହିଲୁ ତୋହଠାରେ ॥ ଦୋଷଗୁଣେ ବୈକୁଣ୍ଠ ଯେ ନୋହିବ ପ୍ରାପତ । ସହସ୍ରେ ଜନମ ହେବୁ ମର୍ତ୍ତ୍ୟପୁରେ ସତ୍ୟ ॥ ମାନବ ଦେହରେ ଦଶରଥ ନାମ ବହି । ମର୍ତ୍ତ୍ୟଭୁବନରେ ତୁ ଜନମ ହୁଅ ଯାଇ ॥ ଶ୍ରୀରାମ ଅବତାର ହୋଇବେ ଯେଉଁକାଳେ । ଜନମ କରିବୁ ତାଙ୍କୁ ପାଞ୍ଚ ସାତ ବେଳେ ॥ ଯେତେବେଳେ ବନବାସ ଯିବେ ରଘୁନାଥ । ସେତେବେଳେ ମୃତ୍ୟୁ ତୋତେ ହୋଇବ ପ୍ରାପତ ॥ ପାଞ୍ଚସାତ ଜନମ ଯେ ଯିବ ତ୍ରେତୟାରେ । ବସୁଦେବରୂପେ ଜାତ ହୋଇବୁ ଦ୍ୱାପରେ । ସୁଦେବ ନନ୍ଦ ଯେ ବସୁଦେବ ମହାବୀର । ଦେବକୀ ନାମରେ ଯେ ଭାରିଯା ହେବ ତୋର ॥ ତାହା ଅବତାର ଯେ ହୋଇବ ସେତେବେଳେ । ତୋହ କୋଳେ ଜନମିବେ ସାତ ପାଞ୍ଚ ବେଳେ ॥ ତେବେ ତୁ ଯେ ମୁକତ ହୋଇବୁ

ଦେବପତି । ବୈକୁଣ୍ଠେ ବସିବୁ ଯାଇଁ ଦେବଲୋକ ତଳ ॥ ଶୁଣି ବେଣୁପାଣି ବ୍ରହ୍ମା ସନ୍ତୋଷ ହୋଇଲେ । ଦୀନକୃଷ୍ଣ ଦାସ ଏହା ଗୀତରେ କହିଲେ ।

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀହରି ଅର୍ଜୁନ ସମ୍ବାଦେ ନାମ ସତାବନୋଽଧ୍ୟାୟଃ ।

---

## ଅଠାବନ ଅଧ୍ୟାୟ ।

### ଶ୍ରୀକୃଷ୍ଣ ଉବାଚ ।

ଶ୍ରୀହରି ବୋଇଲେ ଶୁଣ ହେ ବୀର ପାର୍ଥ । ବ୍ରହ୍ମା ହୋଇଥିଲେ ଦଶରଥ ଭୂପେ ଜାତ ॥ ପୂର୍ବେ ଶାସ୍ତ୍ର ଗୋଷ୍ଠୀ ଯେ କହିଦେଲୁଁ ତୋତେ । ଆଉ କଥା ଥିଲେ ତୁ ପଚାର ହେଳା ମୋତେ ॥ ଅର୍ଜୁନ ବୋଇଲେ ତୁମ୍ଭେ ଶୁଣ ନନ୍ଦବତ୍ସ । ପୂର୍ବ କଥାମାନ ମୁଁ ଯେ ନ ଜାଣଇ କିଛି ॥ ଶ୍ରୀରାମ ବୋଲିଣ ଥିଲେ ଦଶରଥ ସୁତ । ତାହାଙ୍କୁ ଯେ ସେବା କଲା ବୀର ହନୁମନ୍ତ ॥ କପିକୁଳେ ଜନମି ହୋଇଲା ହର୍ଷା ଏତେ । ଦେବତାମାନେ ପୁଣି ହେଉ ନାହାନ୍ତି ତେତେ ॥ ସାତସିନ୍ଧୁ ଡେଇଁଣ ଯେ ସୀତା ଠାବ କଲା । ବନ୍ଧ ବାନ୍ଧି ଶ୍ରୀରାମଙ୍କୁ ଲଙ୍କାକୁ ସେ ନେଲା ॥ ଏତେ ବଳ କାହୁଁ ସେ ପାଇଲା କପିପତି । କପିଗଣ ମଧ୍ୟରେ ସେ ବୋଲାଇଲା ଯତି ॥ ତେଣୁକରି ତୁମ୍ଭଙ୍କୁ ପଚାରୁଅଛୁ ହରି । ହନୁମନ୍ତ କଥା ମୋତେ କହ ତଥ୍ୟ କରି ॥ ଶ୍ରୀହରି ବୋଇଲେ ଯାହା ପଚାରିଲୁ ପୁଣ । ହନୁମନ୍ତ ମହିମା କହିବା ଏବେ ଶୁଣ ॥ ସବୁ ଦେବତାଏ ବସି କଲେ ଯେ ବିଚାର । ଶ୍ରୀରାମ ମାରିବେ ଯେ ରାବଣ ଲଙ୍କେଶ୍ୱର ॥ ସମୁଦ୍ର ବାନ୍ଧିବାକୁ କେ ସାମରଥ ଅଛି । ତେବେ ସିନା ମରିବ ସେ ଦଶବାର ବସ୍ତି ॥ ବ୍ରହ୍ମା ବୋଇଲେକ ଅମ୍ଭେ ବ୍ରହ୍ମା ବିଷ୍ଣୁ ଶିବ । ତିନି ଲୋକ ହୋଇବୁଁ ଯେ ହନୁମନ୍ତ ଜୀବ ॥ ଦେବଙ୍କର ତେଜ ଅମ୍ଭ ତିନିଙ୍କର ତେଜ । ଗୁରୁଙ୍କ ଅଂଶରୁ ହେବ ହନୁମନ୍ତ ଜାତ ॥ ଦଇତ୍ୟାରି ଦେବଗଣ ଆଉ ପଦ୍ମଯୋନି । ଅକ୍ଷୟ ଯେ ମହାଦେବ ଆବର କାତ୍ୟାୟନୀ ॥ ପାଞ୍ଚ ଅଂଶ ଘେନି ହନୁମନ୍ତ ହେଲା ଜନ୍ମ । ତୋ ଆଗେ କହିଲୁଁ ପାର୍ଥ କଥାର ମରମ ॥ ଶୁଣିକରି ଅର୍ଜୁନ ହୋଇଲେ ମନେ ତୋଷ । ବୋଇଲା ମୁକତି ମୋତେ କଲ ନନ୍ଦଶିଷ୍ୟ ॥ ଆବର କଥାଏ ପ୍ରଭୁ ମୋତେ ଆଜ୍ଞା ହେଉ । ଅମ୍ଭ ଜ୍ୟେଷ୍ଠଭାଇ ଯେ ଯୁଧିଷ୍ଠିର ମହାବାହୁ । ତାହାଙ୍କୁ ହର୍ଷାଇ ତୁମ୍ଭେ ଦଣ୍ଡବତ କର । ଏ କଥା ଗୋଷ୍ଠୀକ ଯେତେ କହ ଚକ୍ରଧର ! ଶ୍ରୀହରି ବୋଇଲେ ସେ ଯେ ବଡ଼ଲୋକ ପୂର୍ବେ । ସେ କଥା ଯେତେକ ତୋତେ କହିଦେବା ଏବେ ॥ କେତୁ ନାମେ ବ୍ରହ୍ମା ଯେ ବିଷ୍ଣୁଙ୍କୁ କଲା ସେବା । ଈଶ୍ୱର ବୋଇଲେ ହେ ବରମାଗ ଦେବା ॥ କେତେ ଦିନ ସେବା କଲୁ ଅହୋରାତ୍ର ଜାଣି । ସେ ବୋଇଲେ ଶତେ ଯୁଗ ଥୋଇଅଛୁ ଗଣି ॥ ମୋହ କୃଷ୍ଣବଂଶେ ଜନ୍ମ ହେବେ ନରବର । ନରସିଂହ ଦାସ ଯେ ହୋଇବ ତାହା-

ଙ୍କର ॥ ମୋହ ନାମରତ୍ନଗୀତା ଅଟଇ ଯେ ସାର । ହୀନକୃଷ୍ଣଦାସ ଯେ ଭାବଇ ଭବନ୍ଧର ॥

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀହରିଅର୍ଜ୍ଜୁନ ସମ୍ବାଦେ ନାମ
ଅଠାବନୋଽଧ୍ୟାୟଃ ।

---

ଊନଷଷ୍ଠି ଅଧ୍ୟାୟ ।

ଶ୍ରୀ ଭଗବାନୁବାଚ ।

ଅର୍ଜ୍ଜୁନ ଆଗରେ ଯେ କହନ୍ତି ପୀତବାସ । ଏକମନେ ଶୁଣ ତୁ ହେ ଶ୍ରୀକୃଷ୍ଣର ରସ ॥ ଶଚୀଦେବୀଙ୍କ ହୋଇଲଣି ସେବା କଲି ତୋତେ । ଅମରପୁରରେ ପ୍ରଭୁ ଇନ୍ଦ୍ର କର ମୋତେ ॥ ସେବା ମୋର କଲପେ ହୁଅଇ ଯେବେ ଶେଷ । ତେଡାଇବା ପାଇଁ ଗଣି ଥିଏ ,ଏକପୁଷ୍ପ ॥ ଏହିରୂପେ ଶଚୀଦେବୀଙ୍କ ସେବା କରି ପୁଣି । ଶଚୀଗୋଷ୍ଠୀ ପଦ୍ମପୁଷ୍ପ ହୋଇଅଛୁ ଗଣି ॥ ଆନ ବରେ ମହାପ୍ରଭୁ କାର୍ଯ୍ୟ ମୋର ନାହିଁ । ଇନ୍ଦ୍ରପଣେ ବସିବ ଅମରସ୍ୱର୍ଗେ ଯାଇଁ ॥ ଏଥିପାଇଁ ସେବା ମୁଁ ଯେ କରିଅଛୁ ତୋତେ । ସ୍ୱର୍ଗରେ ବସାଅ ନେଇ ଇନ୍ଦ୍ରପଣେ ମୋତେ ॥ ଏସନକ ବାଇତା ପାଇଣ ସୁରପତି । ପୁଷ୍ପ ଗୋଟିଏକ ହରିନେଲା ଶୀଘ୍ରଗତି ॥ ବୋଇଲା ମୋହର ପଦ ଯେଉଁବାକୁ ବ୍ରହ୍ମା । ଅଧର୍ମ ବିଗ୍ରହ କର୍ଯ୍ୟା କଲା ମହାତମା ॥ ଏଥି କିଛୁ ମୋହର ଯେ ଦୋଷ ନାହିଁ ଅଛି । ଧର୍ମଦେବତାହିଁ ଏଥି ସାକ୍ଷୀ ହୋଇ ଥାଉ ॥ ଏତେ ବୋଲି ପୁଷ୍ପ ଗୋଟିଏକ ନେଲା ହରି । ଦେବବ୍ରହ୍ମା ତାହା ନ ପାଇଲା ହେଳୁକରି ॥ ବିଷ୍ଣୁକାର ବୋଇଲେ ଯେ ବ୍ରହ୍ମାମୁଖ ଗର୍ଭ । ସକଳରେ ସେବାକଲୁ ତୋର ପୁଷ୍ପ କାହିଁ ॥ ଅଞ୍ଜ ପାଇ ବ୍ରହ୍ମା ପୁଷ୍ପ ଛାମୁରେ ଥୋଇଲା । ଗଣିଲବେଳକୁ ଊଣା ଗୋଟିଏ ହୋଇଲା ॥ ବିଷ୍ଣୁକାର ବୋଇଲେ ହେ କହୁଅଛୁ ତୋତେ । କପଟ କରିଣ ତୁ ଯେ ସେବାକଲୁ ମୋତେ ॥ ଶଚୀବର୍ଷ ପର୍ଯ୍ୟନ୍ତେ କଲୁ ଯେ କଳ୍ପନା । ଗଣିଲା ବେଳକୁ ପୁଷ୍ପ ହୋଇଲା ଯେ ଊଣା ॥ ଦେଉଛନ୍ତି ଶାପ ତୋତେ ଦେଉଅଛୁ ଶରେ । ମାନବ ଦେହରେ ଜାତ ହୁଅ ମର୍ତ୍ତ୍ୟପୁରେ । ଯୁଧିଷ୍ଠି ବୋଲିଣ ନାମ ହୋଇବ ତୋହର । ଶଚୀଜନ୍ମ ଗଲେ ତୋର ପାପ ଯିବ ପାର ॥ ଧର୍ମକଥା ଅବୋଲୁ ଯେ ମର୍ତ୍ତ୍ୟପୁରେ ଥିବୁ । ମିଛ ନ କହିଲେ ସିନା ବୈକୁଣ୍ଠକୁ ଯିବୁ ॥ ବାସୁଦେବ ନାମେଣ ଯେ ବସୁଦେବ ସୁତ । ନମସ୍କାର କଲେ ତୁ ଯେ ହୋଇବୁ ମୁକତ ॥ ଶୁଣିକରି ସନ୍ତୋଷ ହୋଇଲେ ଦେବବ୍ରହ୍ମା । ଇନ୍ଦ୍ରକୁ ମନରେ କୋପ କଲେ ମହାତମା ॥ ବୋଇଲେ ହେ ସୁରପତି ଅଧର୍ମକୁ କଲୁ । ଶଚୀଗୋଷ୍ଠୀ ପୁଷ୍ପ ମୋର ଅନେଷ୍ଟ କଲୁ ॥ ଦେଉଛନ୍ତି ଶାପ ତୋତେ ଦେଉଅଛୁ ମୁହିଁ । ମର୍ତ୍ତ୍ୟ ଜାତ ହୋଇବୁ ମାନବଦେହ ବହି ॥ ଧୃତରାଷ୍ଟ୍ର ନାମ ତୋ ହସ୍ତିନା ନାମେ ପୁର । ଅନେଷ୍ଟ ପୁଷ୍ପ ଜାତ ହୋଇବେ ତୋହର ॥ ଏ ମୋହର ଶାପ ତୋତେ ମେଣ୍ଟିଣ ନ ଯାଉ । ଏକାଦେହ ଗୋଷ୍ଠୀ

ତୋର ଅନେଶ୍ୱର ନେଉ ॥ ଶିରଚ୍ଛେଦ ହୋଇ ଅନେଶ୍ୱର ବେଳ ଥିବୁ । ଭାରଥ-
ଯୁଦ୍ଧରେ ତୁଚ ମୁକ୍ତ ହୋଇଯିବୁ ॥ ଶ୍ରୀହରି ବୋଇଲେ ଭୁ ହୋ ଶୁଣ ମହାବୀର ।
ଧୃତରାଷ୍ଟ୍ର ନନ୍ଦନ ହୋଇଲା ସୁନାଶିର ॥ ଏହା ଇନ୍ଦ୍ର ଜନଶତ ତୁମର ହୋଇଲା ।
ଦୀନକୃଷ୍ଣ ଦାସ ଏହା ଗୀତରେ କହିଲା ॥

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀହରି ଅର୍ଜୁନ ସମ୍ବାଦେ ନାମ
ଊନଷଷ୍ଠିତମୋଽଧ୍ୟାୟଃ ।

---

## ଷଷ୍ଟିତମ ଅଧ୍ୟାୟ ।

ଅର୍ଜୁନ ବୋଇଲେ ତୁମ୍ଭେ ଶୁଣିବା ଗୋସାଇଁ । ତୁମ୍ଭକର୍ଣ୍ଣ ଶ୍ରବଣ ଏ ପୂର୍ବେ
ଥିଲେ କାହିଁ ॥ କେଉଁକରି ଗୋସାଇଁ ପଚାରୁଅଛୁ ମୁହିଁ । ସେ କଥା ଗୋଟିକ
ମୋତେ ଫେଡ଼ି ଦେବ କହି ॥ ଶ୍ରୀହରି ବୋଇଲେ ଯାହା ପୁଛାକଲ ପୁଣ । ତୁମ୍ଭକର୍ଣ୍ଣ
ଶ୍ରବଣର ପୂର୍ବଜନ୍ମ ଶୁଣ ॥ ପାତାଳ ବୈକୁଣ୍ଠେ ବସେ ପ୍ରଭୁ ବିଶ୍ୱକାର । ଧ୍ୟାନରେ
ବସିଲେ ଦେଇ ନାହିଁ ସିଂହଦ୍ୱାର ॥ ଆପଣା ଶ୍ରୀଭୁଜକୁ ତୁଥିର ଜାତ କଲେ ।
ଦକ୍ଷିଣ ଶୁଣ୍ଡାଏ ଘେନି ଶ୍ରୀଭୁଜେ ମର୍ଦ୍ଦିଲେ । ବେନିଗୋଟି ପିତୁଳା ଗଢ଼ିଲେ
ଭରିଞ୍ଜନ । ମୃତ୍ୟୁସଞ୍ଜିବନୀ ମନ୍ତ୍ର କହିଲେ ତା କର୍ଣ୍ଣ ॥ ବେନିଗୋଟା ପୁରୁଷ ହୋଇଲେ
ତହୁଁ ଜାତ । କରପଦ୍ମ ଯୋଡ଼ି କଲେ କୋଟି ଦଣ୍ଡବତ ॥ ବୋଇଲେ ଆମ୍ଭଙ୍କୁ ତୁମ୍ଭେ
ଜାତକଲ ଯେବେ । କେଉଁ ଠାବରେ ରହିବୁ ଆଜ୍ଞାହେଉ ଏବେ ॥ ବିଶ୍ୱକାର
ବୋଇଲେ ଆମ୍ଭଙ୍କୁ ସେବାକର । ତୁମ୍ଭଙ୍କୁ ଲାଗଇ ପୁଣ ବୈକୁଣ୍ଠ ଦୁଆର ॥ ଯେତେ
ଲୋକ ଆଇଲେ ନ ଦେବ ପଥଛାଡ଼ି । ବେନିଭାଇ ଦ୍ୱାର ତୁମ୍ଭେ ବସିଥିବ ମାଡ଼ି ॥
କୌଣସି କଥାକୁ ଭୟ ନ କରିବ ଆଉ । ଜୟ ବିଜୟ ବୋଲିଣ ନାମ ତୁମ୍ଭ ହେଉ ॥
ଏମନ୍ତ ବୋଲିଣ ଆଜ୍ଞା ଦେଲେ ବିଶ୍ୱକାର । ପ୍ରବେଶ ହୋଇଲେ ଆସି ମନୁ ବେଦ-
ବର ॥ ଠାକୁରଙ୍କୁ ଦର୍ଶନ କରିବେ ବୋଲି ବ୍ରହ୍ମା । ଭିତରପୁରକୁ ବୋଲି ଗଲେ
ମହାତ୍ମା ॥ ବେନି ଦ୍ୱାରପାଳ ତାଙ୍କୁ ନ ଛାଡ଼ିଲେ ବାଟ । ବୋଇଲେ ହେ ବ୍ରହ୍ମା
ତୁମ୍ଭେ ଅଜ୍ଞାନ କି ଅଟ ॥ ପ୍ରଭୁ ଆଜ୍ଞା ନୋହିଲେ ଛାଡ଼ିବୁ କାହିଁ ଆମ୍ଭେ । ଭିତର-
ବାସରେ କିପାଁ ଦେଇଁଯିବ ତୁମ୍ଭେ ॥ ମନୁବ୍ରହ୍ମା ବୋଇଲେ ଅବଶ୍ୟ ଆମ୍ଭେ ଯିବୁଁ ।
କେବଳ ଦର୍ଶନ କରି ବାହୁଡ଼ି ଆସିବୁଁ । ଏତେ ବୋଲି ଭିତରକୁ ପଶିଲେ ହରଷି ।
ତାଡ଼ନା ମାଇଲେ ତାଙ୍କୁ ଦ୍ୱାରପାଳେ ଆସି ॥ ଭଣ୍ଡିଯାକ ଫୋପଡ଼ାଇ ଦେଲେ
ଉତବର୍ମା । କୋପକ୍ରରେ ଶାପ ତାଙ୍କୁ ଦେଲେ ମନୁ ବ୍ରହ୍ମା ॥ ବୋଇଲେ ଆମ୍ଭଙ୍କୁ
ଯେ ଦଣ୍ଡମଣ୍ଡ କରିଲ । ଅସୁର ପ୍ରକୃତି ଧରି ତାଡ଼ନା ମାଇଲ ॥ ଶାପ ତୁମ୍ଭଙ୍କୁ ଯେ
ଏବେ ପଡ଼ୁ ଅବଶ୍ୟ ସତ୍ୟେ । ଦନୁଜ ହୋଇଣ ତୁମ୍ଭେ ଜାତ ହୁଅ ମର୍ତ୍ତ୍ୟେ ॥ ହିରଣ୍ୟ ଯେ
ହିରଣାକ୍ଷ ବୋଲି ବେନିଭାଇ । ଶତେତେବେଳେ ଜନମ ହୋଇବ ମର୍ତ୍ତ୍ୟେ ଯାଇ ॥
ଯେତେବେଳେ ମାରିବେଟି ପ୍ରଭୁ ଚକ୍ରଧର । ତେତେବେଳେ ମୁକତ ହେ ଲଭିବ

ଭକତ ॥ ଆବର ଦେଖିବ ତୁମ୍ଭେ ଶ୍ରୀମନ୍ତୀରମଣ । ସେକାଳେ ପରମଗତି ଲଭିବଟି ଜାଣ ॥ ମୋହ ନାମରତ୍ନଗୀତା ହେତୁ ଚିତ୍ତେ ଧର । ହୀନକୃଷ୍ଣ ଦାସ ଗୀତେ କଲାକ ପ୍ରଗଲ୍ଭ ॥

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀହରି ଅର୍ଜୁନ ସମ୍ବାଦେ ନାମ
ଷଷ୍ଠିତମୋଽଧ୍ୟାୟଃ ।

---

## ଏକଷଷ୍ଠିତମ ଅଧ୍ୟାୟ ।

### ଶ୍ରୀକୃଷ୍ଣ ଉବାଚ ।

ଆବର କଥାଏ ପାର୍ଥ ତୋତେ ଦେବା କହି । ଯୁଗକେ ତୁ ଅମୃତ ମାଉଷୀ-ପୁଅ ଭାଇ । ଯେମନ୍ତ ପ୍ରକାରେ ଚୋର ଛୟଣିକ ପ୍ରାପ । ମୋହ ନାମ ଧରି ଏକା ହୃଦପଦ୍ମେ ଜପ ॥ ନାମବ୍ରହ୍ମ ଜପି ଯେ କରଇ ମୋର ସେବା । ସେ ପ୍ରାଣୀ ଗୋଷ୍ଠୀକୁ ହମ ପଞ୍ଚାନ୍ତର ଦେବା ॥ ଦୁଃଖକୁ ତା ଭୟ ନାହିଁ କହୁଅଛି ତୋତେ । ଭିକ୍ଷା ମାଗି ଧନ ନେଲେ ନ ଛାଡ଼ଇ ମୋତେ ॥ ପୂର୍ବ ଦାସ୍ୟ କୁଟୁମ୍ବ ହୋଇବେ ଯେବେ ନାଶ । ଭଲେହେଁ ମନକୁ ତାର ନ ଲାଗଇ ତ୍ରାସ ॥ ମାୟା ମୋହ ଗୋଷ୍ଠୀରେ ତା ମନ ନୋହେ ଭ୍ରମ । ଏକା ତାର ସକଳ ସମ୍ପଦ କୃଷ୍ଣନାମ ॥ ଚିତ୍ତ ଦୃଢ଼ କରି ଏକା ନାମ କଲେ ଜପ । ସେ ପ୍ରାଣୀ ଦେହରେ ଆଉ କିଛି ନାହିଁ ପାପ ॥ କୋଟି ଯଜ୍ଞ କରି ଦାନ ଦେଲେ ଗୁଣ୍ଠି ଚିତ୍ତେ । କୋଟିଏ ଜନ୍ମରଯାଏ ଶିଖେ ବେଦ ଭେଦେ ॥ କୋଟି ବାରବ୍ରତ କୋଟି ରତ୍ନ ପଢ଼େ ଯେତେ । ନାମ କୀର୍ତ୍ତନକୁ ପାର୍ଥ ସରି ନୋହେ କେତେ ॥ କୋଟିଏ ମକରମାସେ ବାରାଣସୀ ଯାଉ । କୋଟି କୋଟି କରଣ ଗୟାରେ ପିଣ୍ଡ ଦେଉ ॥ କୋଟିଜ୍ଞାନ କୋଟିଧ୍ୟାନ କୋଟି କୋଟି ମନ୍ତ୍ର । କୋଟିଏ ଉଲଗ୍ନ ହୋଇ କୋଟି ମୌନବ୍ରତ ॥ କୋଟିଏ ଆସନ କୋଟି ଉପାସନା କରି । ନାମକୀର୍ତ୍ତନକୁ ପାର୍ଥ କେହି ନୋହେ ସରି ॥ ଯାଗରେ କୋଟିଏ ବାରି ଗ୍ରାସ ଯେବେ ଦେଇ । ନାମକୀର୍ତ୍ତନକୁ ପାର୍ଥ ସରି ନୋହେ କେହି ॥ କୋଟି ଉଦୟମୁଖ କୋଟି ଭୂରଙ୍ଗ ସିନା । କୋଟି ମେରୁ ତୁଲ୍ୟ କରି ଦାନ ଦେଲେ ସୁନା ॥ କୋଟି ଜଳକୀର୍ତ୍ତି କୋଟି ଦେଉଳର ଧାମ । ନାମକୀର୍ତ୍ତନକୁ ପାର୍ଥ କେହି ନୋହେ ସମ ॥ ଏ ମୋହର ନାମ ପାର୍ଥ ଅଛିଟି ଗହନ । ସରସ୍ୱତୀ ଲେଖିବାକୁ ବାରେ କଲେ ମନ ॥ ଅସ୍ତଗିରି ଯୋଡ଼ିଣ ଯେ ଭୂରି କଲ କାଲି । ସପତସମୁଦ୍ର ପାଣି ଉଭରେଣ ଗୋଳି ॥ ପତ୍ର କରି ହସ୍ତରେ ଧଇଲେ ସୁରଜେମା । କଲପ ବୃକ୍ଷକୁ ସେ ଲେଖନ କଲେ ବାମା ॥ ନବଖଣ୍ଡ ପୃଥ୍ୱୀ ପତ୍ର କଲେକ ହଳସ୍ତି । ନାମର ମହିମା ଲେଖି ନ ପାରିଲେ କିଛି ॥ ଏ ମୋହର ନାମେ ଯାରଂମନ ଯାଇଁ ପଶେ । ସପତସମୁଦ୍ର ପାଣି ଥୋପା ପ୍ରାୟ ଦିଶେ ॥ ଅପ୍ରମେୟ ଆକାଶ ଦିଶଇ ଅଚଳନ । ଷୋଳଖଣ୍ଡ ପ୍ରାୟ ତାକୁ ଦିଶଇ ଅର୍ଜୁନ ॥ ସୂର୍ଯ୍ୟଙ୍କୁ ମଣଇ ସେ ସେ ଖଦ୍ୟୋତ ପ୍ରାୟେ । ବାମଦେବ ଦିଶଇ ମର୍କଟ

ଗୋଷ୍ଠୀ ହୁଏ ॥ ଦରିଦ୍ର ପ୍ରାପ୍ତକ ତାକୁ ହସଇ କୁବେର । ରଙ୍କ ପ୍ରାପ୍ତ ହସଇ ସ୍ୱର୍ଗର ସୁନାଗିରି ॥ ନାସିକାପବନ ହୋଇ ବାହ୍ୟ ଯେମନ୍ତ । ଅଣଷ୍ଟାଗ ପବନ ଯେ ବହଇ ତେମନ୍ତ । କଳପଗଛକୁ ବୋଲେ ଗବଗଛ ଏ ସେ । ସପତସମୁଦ୍ର ପାଣି ଥୋପା ପ୍ରାପ୍ତ ହସେ ॥ ମେରୁକୁ ମଣଇ ସେ ଯେ ପାଲଧୂଆ ଫଳ । ଆଉ କେଉଁ ପଦାର୍ଥ ଯେ ଏମାନଙ୍କ ତୁଲ୍ୟ ॥ ମଣ୍ଡପୁର ଲୋକକୁ ଯେ ନ ମଣଇ ଜନା । ଗଜକୁ ମଣଇ ସେ ଯେ ମଶାବତ ସିନା ॥ ବେଦପଢ଼ି ବୃହସ୍ପତି ମୃଗ ପ୍ରାପ୍ତ ହସେ । ଜଡ଼ା ବୋଲି ତାହାର ଯେ ମନରେ ନ ପଶେ ॥ ବରୁଣସ୍ୱଜାକୁ ସେ ବୋଲଇ ଜଳପୋକ । ଆଉ ଭିନ୍ନ ଦୃଷ୍ଟିରେ ହସଇ ଆନ ଲୋକ ॥ ମୋହର ନାମବ୍ରହ୍ମରେ ପାରଇ ଯେତୁ ପଣି । ଏତେ ଏତେ ପଦାର୍ଥ ତାହାକୁ ତୁଚ୍ଛ ହଣି ॥ ଏକଥା ନ ବୁଝି ତାଦେ ତୀର୍ଥ ବୁଲିଯାନ୍ତି । ମାୟାମୋହେ ପଡ଼ି ପ୍ରାଣୀ ଭୁଲି ମରୁଥାନ୍ତି । ଏ ନାମ ଜାଣିଲେ ଗଙ୍ଗାଜଳେ ତୃତପନ୍ନ । ସେ ଜଳକୁ ଯେସନ୍ତ ତାଦେ ନ ହଅନ୍ତି ମନ ॥ ଉତ୍ତମ ପଦାର୍ଥ ଜଳ ତାହା ଦ୍ୟନ୍ତି ଛାଡ଼ି । ବାଲିଆଡ଼େ କୂପ ଖୋଳି ମରୁଥାନ୍ତି ବୁଡ଼ି ॥ ତୁ ବୋଇଲୁ ତୁମ୍ଭଙ୍କୁ କେମନ୍ତେ ଦେଖି ପାଇ । ସେ କଥା ଅର୍ଜୁନ ତୋତେ ଦେଇଥିବା କହି ॥ ନାମ ଯେ ଜାଣିଲା ଲୋକ ପାଇ ମୋତେ ଦେଖି । ଅଜାଣେ ଅଦୃଶ୍ୟ ଆମ୍ଭେ ଜାଣିଲୁ ଜାଣି ॥ ଅର୍ଜୁନ ବୋଇଲେ ତୁମ୍ଭେ ଶୁଣିମା ଗୋସାଇଁ । ଏତେଦିନେ ନିସ୍ତାର ପାଇଲି ପ୍ରଭୁ ମୁହିଁ ॥ ନାମର ମହିମା ଶୁଣି ପାଇଲି ଭରସା । ଆଜଠାରୁ ମୋହର ଯେ ଗଲା କଷ୍ଟଦଶା ॥ ତୁମ୍ଭ ନାମଗୋଟି ଅବା ହୃଦପଦ୍ମେ ଧରି । କଣ୍ଠରେ ଜପୁଥିବ ରତ୍ନମାଳା କରି ॥ ପାଦପଦ୍ମ ବିନୁ ମୋର ନାହିଁ ଅନ୍ୟ ଆଶା । ଶ୍ରୀମୁଖ ବଚନ ଶୁଣି ପାଇଲି ଭରସା ॥ ଶ୍ରୀହରି ବୋଇଲେ ଶୁଣ ଯୁଧିଷ୍ଠିର ଭାଇ । ଏହି ଶାସ୍ତ୍ର ଶୁଣିଲେ ଯେ ଜ୍ଞାନବନ୍ତ ହୋଇ ॥ ଅମୃତ ଭୋଜନଠାରେ ଆଉଦ୍ରବ୍ୟ ପିତା । ଅପଣ୍ଡିହିଁ ସନ୍ତ ହୁଏ ଶୁଣିଲେ ଏ ଗୀତା ॥ ଶ୍ରୀମୁଖ ବଚନ ଏ ପଦାର୍ଥ ପୁଣ୍ୟ ବାଟ । ଭକତଙ୍କ ସଙ୍ଗାଳି ବୈକୁଣ୍ଠପୁର ନାଥ ॥ ଅବୋଧବାମାକୁ ବୋଧ ଶୁଣ ପାଣ୍ଡୁ ବଂଶି ॥ ସବୁଶାସ୍ତ୍ରମାନଙ୍କର ବୀଜ ଏଥେ ଅଛୁ ॥ ନାମରତ୍ନଗୀତାକୁ ମୋ ଯେ ପାରିବ ଯୋଗ । ଅପୁତ୍ରିକ ପୁତ୍ର ଯେ ହଅନ୍ତି ରତ୍ନପାଣି ॥ ଚିତ୍ତ ଦୃଢ଼ କରି ଏ ଶାସ୍ତ୍ରରେ କଲେ ଲୟ । ଜନ୍ମପତି ଶୁଣି ତାକୁ କରୁଥାଏ ଭୟ ॥ ପ୍ରତିଦିନ ଏ ଶାସ୍ତ୍ରରେ ପାରିବନ୍ତି ପଢ଼ି । ନାନା ରୋଗ ବ୍ୟାଧି ତା ଶରୀରୁଁ ଯିବ ଛାଡ଼ି ॥ ସବୁ ଶାସ୍ତ୍ର ବୀଜ ଏଥେଁ ହୋଇଅଛୁ ଯୋଡ଼ା । ଗ୍ରହମାନେ ଶାନ୍ତ ହୋନ୍ତି ନ କରନ୍ତି ପୀଡ଼ା ॥ ଏ ଗୀତାର ଫଳଶ୍ରୁତି ଅଛୁପାର୍ଥ ଯେତେ । ଅହଅନ୍ତ କରିଣ କହିବା ପୁଣି କେତେ । ଦେବତାଙ୍କୁ ଦୁର୍ଲ୍ଲଭ ମନୁଷ୍ୟେ ଅଗୋଚର । ଭକ୍ତଜନ ସଙ୍ଗାଳି ମୁକତି ପଥ ଦର ॥ ଏ ଶାସ୍ତ୍ରକୁ ହୃଦପଦ୍ମେ ଯେ କରିବ ଲୟ । ମେର ଖଣ୍ଡ ଶତ୍ରୁକୁ ନ ଥିବ ତାର ଭୟ ॥ ଗୋଷ୍ଠୀରେ ପ୍ରଶଂସା ପାଇ ସାଧୁଙ୍କ ଚରଣେ । କଳାହିଁ ଦେଖଇ ତାକୁ ଅମୃତ ନୟନେ ॥ ଦୁଃଖୀ ହୋଇ ମନରେ ଯେ ଶୁଣିବ ଏ ପାଠ । ଧନବନ୍ତ ହୋଇବ ପିଟିବ ତାର କଷ୍ଟ ॥ ଯେବଣ

ଶାସ୍ତ୍ର ଗୋଷ୍ଠୀରୁ ନାମରତ୍ନ ବୋଲି । ଅଯୁଝିକ ପୁଷ୍ପଦାନ ଦେଇଲ୍ଲ ବନମାଳୀ ॥ ଗଙ୍ଗ-ଦ୍ୱାରେ ଶ୍ମଶାନରେ ଯେ କରିବ ଲୟ । ଏ ଶାସ୍ତ୍ର ପଢ଼ି ପଦଶ ହେବ ତାର ବାସ୍ତୁ ॥ ସାଧୁଜନ ପ୍ରାଣୀମାନେ ହୋଇବେ ମୁକତ । ଧ୍ରୁବପଦ ବଚନ ଏ ବ୍ରହ୍ମଜ୍ଞାନ ତତ୍ତ୍ୱ ॥ ନାମରତ୍ନ ମହିମା ପରମ ତତ୍ତ୍ୱ ଗୁଣ । ବେଦ ଶାସ୍ତ୍ର ଆଦ କରି ସବୁରେ ପୁରାଣ ॥ ଅମୃତହୁଁ ଅଧିକ ଯେ ସାଧୁରସବାଣୀ । ସଂସାର ଜନଙ୍କ ହିତେ କୃଷ୍ଣଦାସ ଭଣି ॥

ଇତି ଶ୍ରୀ ନାମରତ୍ନଗୀତାସ୍ୱୟଂ ଶ୍ରୀହରି ଅର୍ଜୁନ ସମ୍ବାଦେ ବ୍ରହ୍ମତତ୍ତ୍ୱ-
ନିରୂପଣେ ପଞ୍ଚମ ତାରେଣ ଦପ୍ତବନ୍ଧୋ ନାମ
ଏକଷଷ୍ଠି ତମୋଽଧ୍ୟାୟଃ ।

---

ଇତି ଦ୍ୱିତୀୟ ନାମରତ୍ନଗୀତା ସମାପ୍ତ ।





# ନାମରତ୍ନଗୀତା ।

## ତୃତୀୟ ଖଣ୍ଡ ।

---

### ବାଷଷ୍ଠିତମ ଅଧ୍ୟାୟ ।

ଜୟ ଜଗନ୍ନାଥ ନାମ ସଂସାରର ନାବ । ଏନାମକୁ ଯେ ଭଜିବ ସେହୁ ପାରି ହେବ ॥ କଳିକାଳେ ନୀଳାଚଳେ ଲୀଳା କରୁଛନ୍ତି । ସେ ଲୀଳାରେ ପଶି ପାପୀ ତରି ଯାଉଛନ୍ତି ॥ ଏ ନାମଟି ଅଟଇ ଯେ ଅମୂଲ୍ୟ ପଦାର୍ଥ । ସଂସାରେ ଏ ନାମଛଡ଼ା ସର୍ବସ୍ୱ ବ୍ୟର୍ଥ ॥ ଗରୁଡ଼ ପଛରେ ମୁହିଁ ଧ୍ୟାଏ ସ୍ୱପ୍ନ ଦିନ । ସ୍ତବ ସ୍ତୁତି ପଢ଼ି ପଢ଼ି ନ ସରିଲା ଦିନ । ଏଣୁ କରି ସର୍ବଶାସ୍ତ୍ର ଦେଖିଣ ବସିଲି । ବହୁକଷ୍ଟେ ନାମରତ୍ନ ମୁହିଁ ଯେ ପାଇଲି ॥ ସେ ରତ୍ନକୁ ଗଳାରେ ମୁଁ କରିଲି ଧାରଣ । ଆନନ୍ଦେ ଲଭିଲି ମୁହିଁ ଅଭୟ ଚରଣ ॥ ପ୍ରଭୁ ଆଜ୍ଞା ପାଇଁ ଏହୁ ନାମରତ୍ନଗୀତା । ଲେଖି ଲେଖି ଭୁଲିଗଲା ମନ ସର୍ବଚିନ୍ତା ॥ ବହୁ କଷ୍ଟେ ଏହୁ ଶାସ୍ତ୍ର କରିଛୁ ଲେଖନ । ମୋହ ସାଧୁ ସୁଜ୍ଞଜନେ ସୁଧା କର ପାନ ॥ ପାନ କରି ଏ ସଂସାରୁ ତର ସର୍ବଜନ । ଭେଦଜ୍ଞାନ ନାହିଁ ମୋର ମୁଁ ଅଟେ ଅଜ୍ଞାନ ॥ ସାଧୁ ସୁଜ୍ଞଜନଠାରେ ଅଶେଷ ବିନତି । ଦୋଷା ଦୋଷ ନ ଧରିବ କରୁଛୁ ବିନତି ॥ ଅର୍ଜୁନ ବୋଇଲେ କହ ଆହେ ଭଗବାନ । କେମନ୍ତ ପୁର ଅଟଇ ବୈକୁଣ୍ଠ ଭୁବନ ॥ ଅର୍ଜୁନ ଶୁଣନ୍ତି ପ୍ରଭୁ ଶ୍ରୀହରି କହନ୍ତି । ମନ ଦେଇ ଶୁଣ ତୁହୋ ପଣ୍ଡୁର ସନ୍ତତି ॥ ଯେବଣ କାଳରେ ସୃଷ୍ଟି କଲେ ସୁରଶ୍ରେଷ୍ଠ । ପିଣ୍ଡ ଆଉ ବ୍ରହ୍ମାଣ୍ଡ ଯେ ଉଭୟ ବୈକୁଣ୍ଠ ॥ ସର୍ବ ବୈକୁଣ୍ଠରେ ସାର ଅଟଇ ଯେହୁ ଶୁଣି । ସେ ତତ୍ତ୍ୱ ନ ପାଇ ବ୍ରହ୍ମେ କରନ୍ତି ଭ୍ରମଣି ॥ ବ୍ରହ୍ମ ଏବେଣ ପୂରି ରହିଛନ୍ତି ସର୍ବଘଟେ । ଘଟେଲ ନ ଛାଡ଼ି ବ୍ରହ୍ମ ଖୋଜନ୍ତି ବୈକୁଣ୍ଠେ ॥ ବୁଝିଲେ ସବୁରି ଦେହ ବୈକୁଣ୍ଠ ଭୁବନ । ଏ ଖେଳ ଛାଡ଼ି ପାରନ୍ତି ଏକା ଜ୍ଞାନୀଜନ ॥ ବେଦଟି ଶରୀରେ ଥାଏ ଶରୀରଟି ବେଦ । ବେଦର ତତ୍ତ୍ୱ ଏକା ଯେ ଅଟନ୍ତି ଗୋବିନ୍ଦ ॥ ଗୋବିନ୍ଦ ଛାଡ଼ିଲେ ଛିଳା ବୈକୁଣ୍ଠ ଛାଡ଼ିବ । ସାର ବଇକୁଣ୍ଠ ଏହୁ ମଧ୍ୟମ ପାଣ୍ଡବ ॥ ସପ୍ତବିଧ ବଇକୁଣ୍ଠ କଥା ଏବେ ଶୁଣ । ଯହିଁ ଦଳେ ଚରିଛନ୍ତି ପ୍ରଭୁ ନାରାୟଣ ॥ ଖୋଜନ୍ତି ସେ ବ୍ରହ୍ମ

ବୈକୁଣ୍ଠକୁ ପିତାମହ । ବେଦ ମୁଖରୁ ନ ଜାଣି ଭଜନରେ ମୋହ ॥ ନାମର ତତ୍ତ୍ୱ ନ ଜାଣି ଜପିଲେ ବୃଥା ଯାଇ । ଗଙ୍ଗାଜଳ ଛାଡ଼ି କୂପ ଜଳକୁ ପିଅଇ ॥ ନାମର ତତ୍ତ୍ୱ କୃଷ୍ଣ ଦାନ ପାଇବାକୁ । ଅମର କର ତନୁକୁ ରକ୍ଷିଛୁ ଜନ୍ମରୁ ॥ ଜନ୍ମକାଳକୁ ବିଧାତା ବୈକୁଣ୍ଠ ନ ଦେଖି । ଦେଖିବା ବୋଲି ବସିଲେ ଭୂତ ଅଷ୍ଟ ଆଖି । ମନ ଚେତନ ବାତୁଳ କରି ପଦ୍ମଯୋଗୀ । ଜ୍ୟୋତିରେ ଲୟକୁ ରଖି ହୋଇ ଅନୁରାଗୀ ॥ ଚକ୍ଷୁକୁ ବୁଜନ୍ତେ ଜ୍ୟୋତି ଦିଶିଲା ନିର୍ମଳ । ବୈକୁଣ୍ଠଯାକରେ ବ୍ୟାପିଛନ୍ତି ଅବିମଳ ॥ ସେ ବୈକୁଣ୍ଠ କଥା ପାର୍ଥ କହିବି ମୁଁ ଶୁଣ । ସିଂହଦ୍ୱାର ବାଟେ ଯାନ୍ତି ଦୁଇଗୋଟି ହଂସ ନିମିଷକେ ବୁଲିଯାଇ ପଶନ୍ତି ବୈକୁଣ୍ଠେ । ବିଷ୍ଣୁ ର ସମ୍ପଦ ତହିଁ ଅକଳିତ ଅଟେ ॥ ପ୍ରକାଶ ହୋଇ ଗୋଟିଏ ପାଦ ଚଳିଯାନ୍ତି । ବୈକୁଣ୍ଠେ ପଶି ପରମ ପଦେ ମିଳନ୍ତି ॥ ପ୍ରତ୍ୟକ୍ଷେ ପରମ ବ୍ରହ୍ମ ପ୍ରଭୁ ପୂର୍ଣ୍ଣାନନ୍ଦ । ସେ ବୈକୁଣ୍ଠେ ବିଜେକରି ଅଛନ୍ତି ଗୋବିନ୍ଦ ॥ ସେ ବୈକୁଣ୍ଠର ମହିମା କି କହିବି ମୁହିଁ । କୋଟି କୋଟି ଚନ୍ଦ-ଚନ୍ଦ୍ର ଛନ୍ତି ଉଦେହୋଇ ॥ ଚଉଦିଗ ଆବୋରିଛି ମରକତ ବାଡ଼ । ରହିଅଛି ଅନ୍ତ-ଳିହି ହୋଇ କୂଟ କୂଟ ॥ ମରକତ ସ୍ତମ୍ଭପରେ ବସ୍କଜେ ମାଣିକ୍ୟ । ଭୁଣ୍ଡିରେ ଲଗି ଅଛଇ ହୀରା ନୀଳା ରେଖା ॥ ସୁବର୍ଣ୍ଣର କଳଶରେ ଶୋଭେ ମୋତିହଂସ । ଷଟ୍‌ଟିକର କାନ୍ଥେ ବସେ ବୈଡ଼ୂର୍ଯ୍ୟର ଓସ୍ତ ॥ କାଚର ଯାବନ୍ତେ ସ୍ୱର୍ଣ୍ଣରଷାଣ ଛୁଏଣି । ଅଷ୍ଟଦିଗେ ବିସ୍ତାରଇ ନବରତ୍ନ ମଣି ॥ ଅରୁଣର ପାଟହଂସୀ ଖମ୍ଭା ଗୋଟି ଗୋଟି । ନକ୍ଷତ୍ରଗଣ କି ତହିଁ ପୁଷ୍ପରୂପେ ଫୁଟି । ଇନ୍ଦ୍ରବର୍ଣ୍ଣ ଠାବେ ଠାବେ ମେଘମାଳ ଲମ୍ବେ । ଲକ୍ଷ ଲକ୍ଷ ପ୍ରତିମା ଯେ ଲେଖା ଖମ୍ବେ ଖମ୍ବେ ॥ ଖମ୍ବ ଗୋଟିକେ ନିର୍ମାଣ ଚଉଷଠି ପାଟ । ପାଟେ ପାଟେ ନବରତ୍ନ ବିଧେ ଝଟ ଝଟ । ଅଷ୍ଟଦିଗେ ଅଷ୍ଟଖମ୍ବ ହୁଏ ଅଷ୍ଟଚିର । ମାତ୍ର ବସିଅଛୁ/ଅଷ୍ଟଦିଗେ ବସୁନ୍ଧରୀ ॥ ଏ ସଂସାରେ ନାନାବର୍ଣ୍ଣେଛନ୍ତି ଯେତେ ଜୀବ । ଏକତ୍ରମେ ବସିଛନ୍ତି କୋଟି କୋଟି ଖଟ ॥ ଦଶଦିଗରେ କୃଷଣ ଦଶ ଦିଗପାଳ । କେବଣ ସ୍ଥାନରେ ଅବତାର ମାଳ ମାଳ ॥ କେଉଁ ସ୍ଥାନେ ମତ୍ସ୍ୟରୂପ କାହିଁରେ କଚ୍ଛପ । କାହିଁ ବା ବରାହ କାହିଁ ନରସିଂହ ରୂପ ॥ କାହିଁ ଲେଖା ହୋଇଛନ୍ତି ବାମନ ମୂରତି । ଭୃଗୁପୁର ମୋହ କାହିଁ ପର୍ଶୁରାମ ଯତି ॥ କେଉଁସ୍ଥାନେ ରଘୁନାଥ ହୋଇଛନ୍ତି ଭିଆ । କାହିଁ କୃଷ୍ଣରୂପ ନବଘନ ଶ୍ୟାମପ୍ରଭା ॥ କାହିଁରେ ବହୁଙ୍ଗିରୂପ ହସ୍ତରେ ହଳଧ । କାହିଁ ହର ଗୌରୀ ରୂପ କାହିଁ ଅଷ୍ଟସଖୀ ॥ କାହିଁ ବିରାଜନ୍ତି ପ୍ରଭୁ ଲକ୍ଷ୍ମୀ ନାରାୟଣ । କେଉଁଠାବେ ଚନ୍ଦ୍ର ସୂର୍ଯ୍ୟ ଅରୁଣ ବରୁଣ ॥ କାହିଁ ବସେ ଯମ ଧର୍ମ ମରୁତ ନୈଋତ । କାହିଁ ସୁର ବୈଶ୍ୱାନର କୁବେରେ ଦେବତ । ଅନନ୍ତ ମୂର୍ତ୍ତି ବାସୁକି କେଉଁ ସ୍ଥାନେ ଲେଖା । କାହିଁ ରମ୍ଭା ତିଲୋତ୍ତମା ଉର୍ବଶୀ ମେନକା କାହିଁ ମହାସିଂହ ମୂର୍ତ୍ତି ମଣ୍ଡି ନାଗ ଗଜ । କାହିଁ ବନଜାନନ୍ଦନ କାହିଁ ହଂସରାଜ ॥ ବିଷ୍ଣୁ ତକା ବଇଠୀ ସେ ବଇକୁଣ୍ଠ ପୁର । ତାହାର ମହିମା ପାର୍ଥ ମୋତେ ଅଗୋଚର । ସେ ବିଷ୍ଣୁ ନାସା ରନ୍ଧ୍ରେ ବାହାରଇ ଯେତେ । ବ୍ରହ୍ମାଙ୍କର ପରମାତ୍ମ ତେଜ ମାଁ ।

ତେବେ । ଗୋଟିଏ ନିଶ୍ୱାସ ଛାଡ଼ ହେବନ୍ତେ ଲେଉଟି । ପ୍ରଳୟ ସରଇ ପୁଣି ଜାତ
ପରମେଷ୍ଠୀ ॥ ଏମନ୍ତେ ସେ ବୈକୁଣ୍ଠରେ ବିଷ୍ଣୁର ମହିମା । ବସିଅଛନ୍ତି ଅର୍ଜୁନ
କୋଳେ ଘେନି ରମା ॥ ଶଙ୍ଖ ଚକ୍ର ଗଦା ପଦ୍ମ ଶୋଭେ ଚାରିକରେ । ଶ୍ରୀବତ୍ସଲାଞ୍ଛନ
ଫୁଟି ଦିଶେ ବକ୍ଷସ୍ଥଳେ ॥ ତାହାପରେ ରତ୍ନମାଳା ଶୋଭେ ସରୁ ସରୁ । କଟିଦେଶେ
ଦିଶଇ ସ୍ୱର୍ଣ୍ଣ ପାଟଜର ॥ ବକ୍ଷସ୍ଥଳେ ଶୋଭାପାଏ କଉସ୍ତୁଭ ମଣି । ବାହୁ ଭୂଜେ
ଶିଖିଚୂଳ ଅପୂର୍ବ ଚୂଡ଼ାମଣି ॥ ଅହୋ ଧନଞ୍ଜୟ ସେହି ରୂପ ଅଗୋଚର । ନାନା-
ପୁଷ୍ପ ଆଭରଣ ହୋଇଛି ଶରୀର ॥ ବେଢ଼ି ପଦ୍ମର ନୂପୁର ବାଜେ ରୁଣୁ ଝୁଣୁ । ଅତି-
ନବ ଜଳଧର ଛବି ଦେହ ବର୍ଣ୍ଣ ॥ ଅରୁଣ ଜ୍ୟୋତିକି ଗଞ୍ଜେ ପାଦପଦ୍ମ ବେନି ।
ତାଙ୍କୁ ପଟାନ୍ତର ନାହିଁ ଆହେ ଫାଲଗୁନି ॥ ନଖପନ୍ତି ମୋତିପନ୍ତି ପ୍ରାୟ ଦିଶନ୍ତି ।
ସୁଗନ୍ଧ ଶୀତଳ ମକରନ୍ଦ ବହି ଯାନ୍ତି ॥ ପ୍ରକାଶେ ଇଷ୍ଟ ପଦ୍ମପ୍ରୟ ସକଳ ପାଳଇ । ସେ
ନଖ ପଦ ଛାଡ଼ିଲେ ଭବାବ୍ଧି ତରଇ । ବହି ପଡ଼ଇ ସେ ମଦ ଉର୍ଦ୍ଧ୍ୱେ ଧାରନ୍ତେକ ।
ସେହି ପଦମକରନ୍ଦ ତାରଇ ପ୍ରାଣିଙ୍କି ॥ ଶ୍ରୀପଦରୁ ମକରନ୍ଦ ଗଳିଲା ବେଳରେ ।
ସୁଗନ୍ଧ ଶୀତ[ଳ] ହୋଇ ବହଇ ତଳରେ ॥ ତଳେ ବହି ଯାଇ ପୁଣି ହେବେ ପାଦ-
ମୂଳେ । ସେ ମକରନ୍ଦ ଅସର ରେଣୁ ସବୁକାଳେ ॥ ଏମନ୍ତେ ସେ ମକରନ୍ଦ ଗଳେ
ପଦ କଞ୍ଜେ । ଉତ୍ଫୁଲ୍ଲ ଚନ୍ଦ୍ର ପ୍ରକାଶି କଲେ ପ୍ରଭୁ ଦକେ ॥ ବ୍ରହ୍ମାଙ୍କୁ ଦେଖା ଦେଇଣ
ବଇକୁଣ୍ଠେ ଗଲେ । ଏକାରଣୁ ସେହି ଦେବଗଣେ ଜଣାଇଲେ ॥ ସ୍ୱର୍ଗ ପୁରରୁ
ବୈକୁଣ୍ଠ ଅଟେ ଜାଣ କେତେ । ଦ୍ୱାଦଶ କୋଟି ଯୋଜନ ଲେଖନ୍ତେ ପଣ୍ଡିତେ ॥
ବିଷ୍ଣୁଙ୍କ ସଙ୍ଗେ ଗଲରୁ ଜାଣିଲି ସେ ପଥ । ମହାଶୂନ୍ୟ ଅଟଇ ସେ ପଥ ଅକଳିତ ॥
ଅକଳିତ କଥା ଏକ ଅଛି ଜାଣ ତହିଁ । ସେ ପଥ ଯାଉଁ ମଳୟ ବାୟୁ ବହୁଥାଇ ॥
ସେ ବାୟୁ ଲାଗି ପଲ୍ଲବ ଯାଏ ଏହି ଦେହ । ଦେବଙ୍କୁ ସଙ୍ଗରେ ଘେନି ଯାନ୍ତି
ପିତାମହ ॥ ସେ ବାଟରେ ନ ଲାଗଇ କ୍ଷୁଧା ତୃଷା କିଛି । ତେଣୁ ଦେବଙ୍କର ଦେହ
ଆରୋଗ୍ୟ ହୋଇଛି ॥ ସାଧୁଙ୍କ ସେ ପଥ ଗୋଟି ଏକା ଯାଏ ଜଣା । ସେ ବାଟ ଆନେ
ନ ପାଇ ହୋଇଥାନ୍ତି ବଣା ॥ ଶୁଣିଣ କୁନ୍ତୀନନ୍ଦନ ପରମ ସନ୍ତୋଷ । ନାମରତ୍ନ-
ଗୀତାରେ ଯେ ଭଣେ କୃଷ୍ଣଦାସ ॥

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀହରିଅର୍ଜୁନସମ୍ବାଦେ ବୈକୁଣ୍ଠ ନାମ
କଥନଂ ନାମ ଦ୍ୱାଷଷ୍ଟିତମୋଽଧ୍ୟାୟଃ ।

---

## ତ୍ରିଷଷ୍ଟିତମ ଅଧ୍ୟାୟ ।

ଅର୍ଜୁନ ଉବାଚ ।

ଅର୍ଜୁନ ପଚାରୁଛନ୍ତି କହନ୍ତି ଗୋବିନ୍ଦ । ଆହେ ପ୍ରଭୁ ଜନାର୍ଦ୍ଦନ ଦେବ
ଆଦିକନ୍ଦ ॥ ସାଧୁ ସନ୍ଥ ବଇଷ୍ଣବ ଅଛନ୍ତି ଯେତେକ । ସେମାନେ ଅଟନ୍ତି ତୋର ଅତି
ପ୍ରିୟଲୋକ ॥ ତୁର ଧର୍ମ୍ମ ବା କପାଇଁ ହୋଇଲେ ସେ ଜନ । ମୋହର ମନମଧ୍ୟରେ

ହୋଇଛୁ ସନ୍ଦେହ ॥ ଶ୍ରୀହରି ବୋଇଲେ ଶୁଣ ଧନଞ୍ଜୟ ବୀର । ଯାହା ତୁହି ପଚାରିଲୁ ତାହାର ଉତ୍ତର ॥ ଦିନେ ଦେବଗଣ ଯାଇଁ ବ୍ରହ୍ମାଙ୍କୁ ପୁଚ୍ଛିଲେ । ବ୍ରହ୍ମା ତା କହି ନ ପାରି ବଇକୁଣ୍ଠେ ଗଲେ ॥ ତାହାଙ୍କ ସଙ୍ଗରେ ଗଲେ ସୁର ଇନ୍ଦ୍ର ମୁନି । ଯକ୍ଷପତି କୁବେର ଯେ ଅଟନ୍ତି ମହାଧନୀ ॥ ମରୀଚି ଦକ୍ଷ ବଶିଷ୍ଠ ଭୃଗୁ ତପୋଧନ । ଅଙ୍ଗିରା ପୌଲସ୍ତ୍ୟ ଋଷି ପୁଲହ ନନ୍ଦନ ॥ ସନକ ଯେ ଶଉନକ ଅମୁରି ଅଗସ୍ତି । ସନନ୍ଦ ଯେ ଯେ ସନାତନ ବୋଢୁ ମହାଯତି ॥ ନାରଦ କଣ୍ୱ ଦୁର୍ବାସା ବ୍ୟାସ ବାଲ୍ମୀକ । ଦଲଣ୍ଡକ ଉଦ୍ଦାଲକ ଚ୍ୟବନ ଜନକ ॥ ରୋମାଞ୍ଚ ଗାର୍ଗ୍ୟ ଜୈମିନି ମୁନି ପରାଶର । ସ୍ଥୂଳ ଋଷି ମେରୁଶୂଳ ଅଛି ମୁନିବର ॥ ଦତ୍ତାତ୍ରେୟ ଅତ୍ରେୟ ଯେ ମୁନି ବିଶ୍ୱାମିତ୍ର । ଅଷ୍ଟାବକ୍ର ସପ୍ତର୍ଷି ମିତ୍ର ପୁଣ୍ୟକ୍ଷେତ୍ର ॥ ବ୍ରହ୍ମବେଦୀ ଜ୍ଞାନବେଦୀ ନାମ ଯଜ୍ଞବେଦୀ । ବିଭୁ ବଇଶମ୍ପାୟନ ଭରଦ୍ୱାଜ ଆଦି ॥ ଋଷିବୃନ୍ଦ ଯେତେ ଲେଖା ହୋଇଛୁ ପୁରାଣେ । ସମସ୍ତେ ଯାଉ ଅଛନ୍ତି ବ୍ରହ୍ମାଙ୍କ ଗହଣେ ॥ ଏହାଙ୍କର ମୂଳେ ପୁଣି ଅଷ୍ଟଦେବ ଯେତେ । ତାର ବାର ଚନ୍ଦ୍ର ସୂର୍ଯ୍ୟ ବରୁଣ ସହିତେ ॥ ପବନ ରଘୁବଂଶ ଯୋଗ କରଣ ଅଛନ୍ତି । ବଇକୁଣ୍ଠ ପୁରେ ବିଜେ କଲେ ପ୍ରଜାପତି ॥ ଉମାଙ୍କୁ ଘେନି ଈଶ୍ୱର ଦେବ ଚଳିଗଲେ । କାର୍ତ୍ତିକେୟ ବିନାୟକ ଶିବଗଣ ଭୁଲେ ॥ ସମସ୍ତଙ୍କୁ ଘେନି ବ୍ରହ୍ମା ବିଷ୍ଣୁଙ୍କ ଛାମୁରେ । କର ଯୋଡି ଜଣାଇଲେ ମଧୁର ସ୍ୱରରେ ॥ ଆହେ ଦେବଦେବ ତୁମ୍ଭେ ତ୍ରିପୁର ସ୍ୱାମୀ । କମଳାଦେବୀବଲ୍ଲଭ ଅଟ ଅନ୍ତର୍ଯ୍ୟାମୀ ॥ ତୋହର ଆଜ୍ଞାରେ ଆମ୍ଭେ ସୃଷ୍ଟି ତିଆରିଲୁ । ଏ ବୈକୁଣ୍ଠ ପୁରେ ତୋର ଦର୍ଶନ ପାଇଲୁ ॥ ତୋହର ଶ୍ରୀ ପାଦପଦ୍ମେ କହିବାକୁ କଷ୍ଟ । ବିସ୍ତରିଛୁ ଆଜ୍ଞା ଯେବେ ଦେବ ହେ ଶ୍ରୀବତ୍ସ ॥ ଶୁଣ୍ଟି ବ୍ରହ୍ମ ପରଯନ୍ତେ ଯେତେ ଅଛି ଜନ୍ତୁ । ସକଳେ ଆସିଛୁଁ ଏଥେ ଅହେ ଦେବ ସ୍ୱାମୀ ॥ ମୁକ୍ତି ନ କରଣ ଯେତୁ ମରନ୍ତି ବ୍ରହ୍ମାଣ୍ଡେ । ସେହି ମଲେ ଉପୁଜନ୍ତି ଯାଇ ନର୍କକୁଣ୍ଡେ ॥ ଜୀଇ ଥିବା ଯାଏ ତାଙ୍କୁ ପଶୁମଧ୍ୟେ ଲେଖି । ଏହେତୁ ଆମ୍ଭଙ୍କୁ ମୋକ୍ଷ-କର ପଦ୍ମଅକ୍ଷି । ଆମ୍ଭଙ୍କୁ ସମ୍ପ୍ରଦା କଥାମାନ ଅଗୋଚର । ବେଦରେ ବୁଝିଲୁ ସେହି ବୋଲେ ଗୁରୁବର ॥ ତେଣୁ ଆମ୍ଭେ ଶ୍ରୀଛାମୁକୁ ଆସିଛୁଁ ସମସ୍ତେ । କହିଲୁ ଗୁରୁ ସମ୍ପ୍ରଦା ହୋଇଲେ କେମନ୍ତେ ॥ ଶ୍ରୀଗୁରୁଙ୍କ ଧର୍ମ ପନ୍ଥା ଶୁଣିବା ଭମନ୍ତେ । ଆସି ଅଛନ୍ତି ସକଳେ ମୋହର ସଙ୍ଗରେ ॥ ଏହି ରୂପେ କହି ବ୍ରହ୍ମା ଜଣାନ୍ତି ଛାମୁରେ । ଶୁଣି ନାରାୟଣ ପ୍ରଭୁ ବିଚାରି ମନରେ ॥ ବୋଇଲେକ ସତ୍ୟ କଥା କହେ ଅସିଦ୍ଧହି ॥ ସମ୍ପ୍ରଦା ନ କଲେ ମୋତେ ନ ଲଭିବେ କେହି ॥ ଆମ୍ଭେ ପ୍ରଭୁ ବୋଲାଇଣ ରହିଲେ ବୈକୁଣ୍ଠେ । ସଂସାରେ ମୋହର ନାମ ଚେତବେତ ଦୁଷ୍ଟେ ॥ ଏମନ୍ତ ପାଞ୍ଚ ବ୍ରହ୍ମାଙ୍କୁ ବିଷ୍ଣୁ ଦେଲେ ଆଜ୍ଞା । ବୋଇଲେ ତୁମ୍ଭ ମୋହର ସମ୍ପ୍ରଦା ପ୍ରତିଜ୍ଞା ॥ ସତ୍ୟ ଧର୍ମ ଦୟା ଜ୍ଞାନ ବୋଲିବା ଉଚ୍ଚାରି । ଗୁରୁକୁଳ ଯାକେ ଅସି ଲଚିବେ ମୋହରି ॥ ଏମନ୍ତ କହନ୍ତେ ସତ୍ୟ ଧର୍ମ ଦୟା ଜ୍ଞାନ । ଶଙ୍ଖ ଚକ୍ର ଗଦା ପଦ୍ମ ରୂପକୁ ଧରିଣ ॥ ଗୁରୁକର ଭଲେ ହେଲେ ଗୁରୁଙ୍କର ବନ୍ଧୁ । ଚଦନ୍ତେ କହିଲେ ଶୁଣ ଯାହା ଅବଧଡ ॥

ସତ୍ୟ ଶଙ୍ଖ ରୂପେ ଯାଇଁ ରହିଲା ଶ୍ରୀକରେ । ତତକ୍ଷଣେ ଯାଇଁ ଧର୍ମ ଚକ୍ର ରୂପ ଧରେ ॥ ଦୟା ଗଦା ହୋଇ ହସ୍ତେ ରହିଲା ସେକ୍ଷଣି । ଜ୍ଞାନ ପଦ୍ମ ରୂପ ଧରି ଆଶ୍ରା କଲା ପାଣି ॥ ଆମ୍ଭ ଚାରି କରେ ଏହି ଚାରି ଲାଗିବାରୁ । ତେଣୁ ବ୍ରହ୍ମା ଆମ୍ଭେ ଚତୁର୍ଭୁଜ ରୂପ ଧରୁ ॥ ସେହି ଭୁଜମାନଙ୍କର ତେଜ ପ୍ରକାଶିବା । ସେ ଭୁଜମାନଙ୍କୁ ମୋର କରିବ ଯେ ସେବା ॥ ତେବେ ସର୍ମ୍ପଦା ହଳାଗ ଦେବା ତୋତେ କହି । ଯେ ଯାହାର ଧାମ କ୍ଷେତ୍ର ଯିବ ଜଣା ହୋଇ ॥ ଏମନ୍ତ କହି ପ୍ରକାଶିଦେଲେ ଚତୁର୍ଭୁଜ । ଦିଶିଗଲା ଶଙ୍ଖ ଚକ୍ର ଗଦା ପଦ୍ମ ତେଜ ॥ ତାହା ଦେଖି ବ୍ରହ୍ମାରୁଦ୍ର କଲେ ଜୟ ଜୟ । ସେ ସମୟେ ସମସ୍ତଙ୍କ ଭୟ ହେଲା କ୍ଷୟ ॥ ଚାରି ଆଡରେ ଓଲଗି ପଡି ପଦ୍ମପ୍ରାୟେ । ଋଷି ସୁରମୁନି ଆଦି ଆନନ୍ଦ ହୃଦୟେ ॥ ଅପୂର୍ବ ଲୀଳାକୁ ଦେଖାନ୍ତି ପ୍ରଭୁ ତାଙ୍କୁ କାହିଁ । ଉଠି ସକଳେ ଦେଖନ୍ତି ପାଦସେବା ଛାଡି । ଶ୍ରୀପଦ୍ମକରକୁ ଯାଇଁ ଲକ୍ଷ୍ମୀ ସେବା-କଲେ । ବିଧାତା ତାହା ଦେଖିଣ ଚମତ୍କାର ହେଲେ ॥ ବୋଇଲେ ସେବା କରିବା ଆମ୍ଭେ ଚକ୍ରହସ୍ତ । ଏହି ଚକ୍ର ଗୋବିନ୍ଦର ଅଟେ ଆତ୍ମାତତ୍ତ୍ୱ ॥ ଆତ୍ମାକୁ ଛାଡିଲେ ସିନା ଜ୍ଞାନକୁ ପାଇବା । ଜ୍ଞାନ ଉଦେ ହେଲେ ସିନା ସଂସାରୁ ତରିବା ॥ ଏମନ୍ତ ମନରେ ପାଞ୍ଚି ଚକ୍ର କର ଗୋଷ୍ଠି । ଆନନ୍ଦେ ଉଠିଣ ସେବା କଲେ ପରମେଷ୍ଠୀ ॥ ପ୍ରଥମରେ ବ୍ରହ୍ମା ଲକ୍ଷ୍ମୀ ସେବିବାର ଦେଖି । ଉଠିଲେ ସନକଋଷି ଚାରି ପଦ୍ମଆକ୍ଷି ॥ ଗଦା ହସ୍ତକୁ ସେବିଲେ ଯାଇଁ ସେହି ମୁନି । ତା ଦେଖି ଉଠିଲେ ରୁଦ୍ର ହୃଦେ ଭକ୍ତି ଘେନି ॥ ଶଙ୍ଖ କରକୁ ସେବିଲେ ସେହି ବୃଷଧ୍ୱଜ । ଧନ୍ୟ ପ୍ରଭୁଙ୍କ ମହିମା ଚତୁର୍ଭୁଜ ତେଜ । ଅନେକ ତପ କଲେ ନ ଦେଖି ନେତ୍ରେ ଯାହା । ବ୍ରହ୍ମା ରୁଦ୍ର ସଙ୍ଗେ ଆସି ଦେଖିଲେ ଯେ ତାହା ॥ ସତ୍ୟ ଧର୍ମ ଦୟା ଜ୍ଞାନ ଯେଉଁ ଚାରି ମୂର୍ତ୍ତି । ଚତୁର୍ଭୁଜରେ ରହିଲେ ବହି ଦିବ୍ୟ ଜ୍ୟୋତି ॥ ଅନୁକ୍ଷଣେ ହେଲେ ବିଷ୍ଣୁ ଅଙ୍ଗର ଭୂଷଣ । ଏ ରୂପ ବର୍ଣ୍ଣିନା କରି ନ ପାରେ ପୁରାଣ । ବ୍ରହ୍ମା ରୁଦ୍ର ଆଦି ସେବା କଲେ ଉତ୍ସାହା । ଯାହାକୁ ଯେ ଦୀକ୍ଷା ଦେଲେ ଶୁଣ ତୁମ୍ଭେ ତାହା ॥ ମହାଲକ୍ଷ୍ମୀଙ୍କ ଲଲାଟେ ଦେଲେ ଏକ ବିନ୍ଦୁ । ତାରକମନ୍ତ୍ର କହିଲେ ଜାତ କରି ହୁହୁଁ ॥ ସେହି ବିନ୍ଦୁ ଜ୍ୟୋତି ରଶ୍ମି ପ୍ରାୟେ ଜଳିଅଛୁ । ବିକୁଣ୍ଠେ ଚନ୍ଦ୍ରମା ପ୍ରାୟେ ଜ୍ଞାନୀଙ୍କି ଦିଶୁଛୁ ॥ ଜାଣିବା ଲୋକଙ୍କୁ ଦୀପ ଶିଖାପରି ଦିଶେ । ଖୋଜିଥାନ୍ତି ନ ଜାଣିବା ଲୋକେ ଥାଇ ପାଶେ ॥ ଶ୍ରୀ ସର୍ମ୍ପଦା ନାରାୟଣ ଏରୂପେ ପ୍ରକାଶି । ଦେଖିଲେ ଚକ୍ରର ସେବା କରେ ବ୍ରହ୍ମା ବସି ॥ ଯେଉଁ ଚକ୍ରରେ ଦ୍ୱାଦଶ ଛନ୍ଦ ପ୍ରକାଶଇ । ଷଡଚକ୍ର ଭେଦି ନାଦ ଉଠେ ଡମ୍ବୁରଇ ॥ ସ୍ୱସ୍ଥ ଅକ୍ଷରକୁ ନେଇ ଥାଏ ଯେତେଦିନ । ଶରୀରେ ବସି ଆତ୍ମାକୁ ପ୍ରକାଶେ ସ୍ଥିରେଣ ॥ ଗ୍ରୀ ଅକ୍ଷର ଛାଡି ନାମ ଧଇଲେ ମରଇ । ପିଣ୍ଡ ଛାଡି ଗଲେ ଆତ୍ମା ବ୍ରହ୍ମେ ପ୍ରକାଶଇ ॥ ସକଳ ଜୀବ ଶରୀରେ ଶବ୍ଦ ଆତ୍ମା ଜାଣ । ଏବେ ଶରୀରୁ ଗଲେ ଦେହେ ମିଶେ ପୁଣ ॥ ଦେହବ୍ୟାପୀ ନାରାୟଣ ନାରାୟଣ ବ୍ରହ୍ମ । ନ ଚିହ୍ନି ତା ମୂଢେ ମରୁଥାନ୍ତି ହୋଇ ଭ୍ରମ ॥ ଚକ୍ର ଗୋଷ୍ଠି ବ୍ରହ୍ମରୂପୀ ବ୍ରହ୍ମ ଚକ୍ର ତହିଁ । ସେ ବ୍ରହ୍ମ ଚିହ୍ନି ସେବିଲେ

ବ୍ରହ୍ମରନ୍ଧ୍ର ପାଇ । ବ୍ରହ୍ମାର ସେବା ଦେଖିଣ ଦେଲେ ପ୍ରଭୁ ଦୀକ୍ଷା । ନାଶା ଅଗ୍ର କେଶପାଏ ତିଳକର ଶାଖା ॥ ହରିମନ୍ଦିର ଦେଲେ ସେ ତିଳକର ନାମ । ବ୍ରହ୍ମ ସମ୍ପ୍ରଦା ବୋଇଲେ ଶ୍ରୀ ପୁରୁଷୋତ୍ତମ । ଚଦାର ଅକ୍ଷର ନାମ ଶୁଣାଇଲେ ପୁଣି । ଛଦଳେ ଗଦା ହସ୍ତକୁ ଗ୍ରହି ଗଦାପାଣି ॥ ଦେଖିଲେ ସେବା କରନ୍ତି ସେ ହସ୍ତସନକ । ତାଙ୍କ ଚକ୍ର ଦେଖି ତାଙ୍କ ଦେଲେକ ତିଳକ ॥ ନାଶା ଅଧରୁ ତିଳକ ଦେଇ ତା ଉପରେ । ବନ୍ଦୁ ମୁଦ୍ରା ଦେଇ ତାକୁ ଗ୍ରହିଲେ ସଧୀରେ ॥ ଆହେ ପାର୍ଥ ମୁଦ୍ରା ଧରି ଭଜଛନ୍ତି ହରି । ସେ ହରି ଶିରଲେ ପଢ ବଢେ ଯେତେ ଶାର ॥ ଯମୁନା କାଳିନ୍ଦିହ୍ରଦ ଅଷ୍ଟଇଷ୍ଟ ସେହି । ଉଲଟ କଦମ୍ବ ତଳୁଁଗାରେ ଅଛୁ ରହି ସେ ବୃକ୍ଷ ଶାଖାରେ ବସି ବେଣୁ ଧରି କରେ ॥ ଜବଗାହୀ ବଦନରେ ଫୁଙ୍କନ୍ତି ସୁସ୍ୱରେ ॥ ମୁରଲୀ ଯେବଣ ରାଧା ନାମ ଗୋଟି ଡାକେ । ସେ ସ୍ୱଧାକୁ କେହି ଛାଡି ନ ପାରନ୍ତି ଲୋକେ ॥ ସ୍ୱଧା ଅକ୍ଷର ଏ ବେଭି ପ୍ରତ୍ୟକ୍ଷରେ ବ୍ରହ୍ମ । ମୁରଲୀ ଗୀତଲ ବ୍ରହ୍ମେ ଲଗାଇଣ ପ୍ରେମ ॥ ସେ ମୁରଲୀ ଉଚ୍ଚସ୍ୱରେ ବୋଲେ ସ୍ୱଧା ସ୍ୱଧା । ସ୍ୱ ଅକ୍ଷର ଗୋଟି ଜୀବ ପରମ ଅଟେ ଧା ॥ ସେ ଜୀବ ପରମ ହୃଦେ ବେଣୁ ରନ୍ଧ୍ର ଅଗ୍ରେ । କ୍ଷଣକରେ ଯାଆ ଆସ କରୁଥାନ୍ତି ବ୍ୟଗ୍ରେ ॥ ସେ ସ୍ୱଧା ଅକ୍ଷର ବେଭି ଅଛୁ ସର୍ବ ଘଟେ । ବେଣୁ ସ୍ୱର୍ଧା ନାମ ଗୋଟି ସ୍ୱପନ୍ନୀତା ଅଟେ ॥ କୃଷ୍ଣ ସ୍ୱଆ ଧରିଣ ଟେକନ୍ତେ ସର୍ବଦା । ତାହାକୁ ହେ ପାର୍ଥ ରାଆ ଶବ୍ଦ ଦେଲେ ରାଧା ॥ ରାଧା ନାମ ଗୋଟି ବ୍ରହ୍ମ ବ୍ରହ୍ମ ରାଧା ଜାଣ । ଜୀବଙ୍କର ଭଜନ ଏ ନାମଟି ପ୍ରମାଣ ॥ ବୁଝିଲେ ସନକ ମୁନି ମହାବ୍ରହ୍ମଜ୍ଞାନୀ । ଶ୍ରୀ ରାଧା ଶ୍ରୀ ବ୍ରହ୍ମ ବୋଲି ପାରିଲେ ଯେ ଛାଡି ॥ ରାଧାକୁ ତହିଁରେ ଘାଇ ଆଣେ କଲେ ଗଦା । ଜେଣୁ ପ୍ରଭୁ ନାମ ଦେଲେ ସନକ ସମ୍ପ୍ରଦା ॥ କ୍ଳ ଅକ୍ଷର ନାମ ମନ୍ତ୍ର କର୍ଣ୍ଣେ କହିଦେଲେ । ସନକଙ୍କ ଦୀକ୍ଷା ଦେଇ ରୁଦ୍ରଙ୍କ ଗ୍ରହିଲେ ॥ ଦେଖିଲେ ଶଙ୍ଖ ହସ୍ତକୁ ସେବୁଛନ୍ତି ଶିବ । ଯେବଣ ଶଙ୍ଖ ନାଦକୁ ପ୍ରକାଶିଛୁ ଜୀବ ॥ ଯନ୍ତ୍ର ଜୀବ ତନ୍ତ୍ର ଶିବ ଆତ୍ମା ଏକା ଅଟେ । ଆତ୍ମା ଗୋଟି ଏକା ପୂରିଅଛୁ ସର୍ବଘଟେ ॥ ବୁଝିଲେକ ବ୍ରହ୍ମା ବିଷ୍ଣୁ ଈଶ୍ୱରହିଁ ଏକ । ଏ ଯୋଗ ଶଙ୍ଖକୁ ଆଶ୍ରା କଲେ ବିସ୍ମିତ ॥ ଶିବଙ୍କ ଚକ୍ର ଦେଖିଣ କକ୍ର ଭବଗାହୀ । ଭୁରୁ ମଧ୍ୟରେ ତିଳକ ବନ୍ଦୁ ଦେଲେ ନେଇ । ନାସା ଅଗ୍ର ନାସାର୍ଦ୍ଧରେ ରହିଲା ତିଳକ । ଈଶ୍ୱରଙ୍କ ଅଙ୍ଗେ ଦେଲେ କମଳା ନାୟକ ॥ ସ୍ଥାନକୁ ଛାଡି ତିଳକ କଷାଇଲେ ନେଇ । ଏ ତିନି ସ୍ଥାନକୁ ଆନ୍ତ ଦ୍ୱିରସ୍ଥାନ ନାହିଁ ॥ ଏ ତିନି ସ୍ଥାନରେ ଉଦେ ହୋଇଅଛୁ ଯାହା । ଜ୍ଞାନକି ଗୋଚରେ ନୋହେ ଅଜ୍ଞାନଙ୍କି ତାହା ॥ ତାକୁ ନ ଘଟି ମରନ୍ତି ଲୋକେହୋଇ କର୍ମୀ । କରନ୍ତି ସେ ଧର୍ମ ନାଶ ବହୁମତେ ଭ୍ରମି । ଏମନ୍ତ ମତେ ଯାଙ୍କୁ ସେ ମହାମନ୍ତ୍ର କଲେ । ତିନିସ୍ଥାନର ତିଳକ ଲେଜ ପ୍ରକାଶିଲେ ॥ ରାମକୃଷ୍ଣ ହରି ନାମ କନ୍ତୁ ଅଚ୍ଛୋରାଧେ । ଜେଣୁ ସେହି ନାମ ଜାଣ ଦେଲେ ମହାମନ୍ତ୍ରେ ॥ ମନମଧ୍ୟେ ହେବୁ କରି ବୁଝିଲେ ପଣ୍ଡିତେ । ତେବେ ସେହି ମନ୍ତ୍ର ସଖି ଜାଣିବେ ସୁଜନେ ॥ ହରି ଅଙ୍ଗ

ରାମକୃଷ୍ଣ ଅଙ୍ଗ ପ୍ରକାଶନ୍ତି । ହରିରେ ରମନ୍ତି ଚାରି ନାମକୁ ବହନ୍ତି । ରାମ ନାମ ଚାରି ପାଠ କୃଷ୍ଣ ନାମ ଚାରି । ହରେ ନାମ ଆଠଗୋଟି ହେଲ ମନେ ଧରି ॥ ଆଦ୍ୟ ପ୍ରାନ୍ତେ ହରିହର ହେଲ ମହରନ୍ତେ । ତେଣୁ ହରେ ଆଠନାମ ବସେ ମହାମନ୍ତ୍ରେ ॥ ଏ ରୂପରେ ଷୋଳନାମ ଷୋଳରେ ବତିଶ । ଲୋକ ପରିତ୍ରାଣ ଅର୍ଥେ କଲେ ଜଗଦୀଶ ॥ ହରେ ରାମ କୃଷ୍ଣ ଏଣୁ ମହାମନ୍ତ୍ର ଧରି । ରୁଦ୍ର କର୍ଣ୍ଣେ କହି ହରି ସମ୍ପ୍ରଦା ଯେ କରି ଚାରି ଅଧ୍ୟାୟକୁ ଚାରି ସମ୍ପ୍ରଦା ପ୍ରକାଶି । ଚାରିଦ୍ୱାର ଚାରିକ୍ଷେତ୍ର କହି ଉତ୍କଳବାସୀ ॥ ଏ ଚାରି ସମ୍ପ୍ରଦା ଦ୍ୱାର ଜାଣ ଏକା ଭକ୍ତି । ସ୍ମରଣ ଭଜନ ଏକା ଏକା ଜାଣ ମୁକ୍ତି ॥ ଏକ ଜ୍ଞାନ ଏକ ଲକ୍ଷ୍ୟ ଏକ ମହାପ୍ରଭୁ । ଏଚାରି ସଂପ୍ରଦାଜନ୍ତ ପାର୍ଥ ଏକାଗ୍ରରୁ ॥ ଏକମନ ଏକପ୍ରାଣ ଏକପୂର୍ଣ୍ଣ ଧ୍ୟାନ । ଏକାହୃଦକୁ ଉପୁଜ ବହୁ ଚାରି ନାମ ॥ ଯାହାର ଯେତେ ମହିମା କହିବା ତା ଗୁଣ । ଏଚାରି ସମ୍ପ୍ରଦା ବଇଷ୍ଣବଙ୍କର ଗୁଣ । ଏଥିକୁ ଉପମା ଦେଇ କହୁଅଛୁଁ ତୋତେ । ଏଚାରିଙ୍କ ଭକ୍ତି ଭିନ୍ନ ନୋହେ କଦାଚିତେ ॥ ହରେ ରାମ କୃଷ୍ଣ ଯେଉଁ ନାମ ଦେଲେ କହି । ଦନ୍ତେ ଭଜନ୍ତି ଚଣ୍ଡାଳ ତାହା ନ ଭଜଇ ॥ ଦ୍ୱାଦଶଗୁଣେ ବ୍ରାହ୍ମଣ ଯୁକ୍ତ ହୋଇ ପୁଣ । ବିଷ୍ଣୁ ନ ଭଜିଲେ ତାଙ୍କ ଗତି ନାହିଁ ଜାଣ ॥ ଯେବଣ ବ୍ରାହ୍ମଣ ଚାରିଜାତିଙ୍କର ମାନ୍ୟ । ଉଦ୍ଧାର ନ ପାରେ ତିଳ ଅମୃ ଭକ୍ତି ଭିନ୍ନ ॥ ଚଣ୍ଡାଳ ଯଦ୍ୟପି ଲକ୍ଷ୍ୟ ରଖେ ବିଷ୍ଣୁ ପାଦେ । ସେହି ତରିଯାଏ ଏହି ସଂସାରର ମଧ୍ୟେ ॥ ଏଣୁଟି ସବୁରି ବିଷ୍ଣୁ ହରି ଏକା ଜାଣ । ଭକତିକି ଚାହିଁ ପତି ଦ୍ୟନ୍ତି ନାରାୟଣ ॥ ଦେଖ ଚାରିଦ୍ୱାରେ ଜଗମୋହନକୁ ଗଲେ । ଜଗନ୍ନାଥଙ୍କୁ ଦର୍ଶନ କରନ୍ତି ସକଳେ ॥ ଗୁଡ଼ ପିଢ଼ୁଲା ନିର୍ମାଣ କରି ରଖିଦେବା । ଯେ ଯେଉଁ ଅଡ଼କୁ ଯାଇ ଭୁଞ୍ଜନ୍ତୁ ନା ଅବା ॥ ସକଳେ ଗୁଡ଼ ଭୋଜନ କରନ୍ତି ଯେପରି । ଏଚାରି ସମ୍ପ୍ରଦା ଗୁଣ ଜାଣ ସେହି ପରି ॥ କେ ମୁଖ ଭଜଇ କେହୁ ଭଜଇ ଚରଣ । କେହୁ ଚକ୍ଷୁ ବଳେ କେହି ନାସିକା ଶ୍ରବଣ ॥ ବିମ୍ବରଲେ ପାଦକୁଚ ନୂହନ୍ତି କେ ସରି । ଯେଉଁ ପାଦ ନଖ ତୋଣ୍ଡୁ ବହେ ଗଙ୍ଗାବାରି ॥ ଯେଉଁ ପାଦତଳ ଲାଗି ଅହଲ୍ୟା ତରିଲା । ବଳୀରାଜା ଯେଉଁ ପାଦେ ଶରଣ ପଶିଲା ॥ ଯେଉଁ ପାଦ ଯୋଗୁଁ ଶୁକ ଶଉନକ ଜ୍ଞାନୀ । ମୁଁ କିସ ଲେଖିବି ଜନ୍ମବହି ନର ଯୋନି ॥ କେବଳ ଶ୍ରୀ ପ୍ରଭୁଙ୍କର ସେବାକୁ ମୁଁ ଦାସ । ଯାହା ଲେଖିଲି ସୁଜନେ ନ ଧରିବ ଦୋଷ ॥

ଇତି ଶ୍ରୀ ନାମରତ୍ନ ଗୀତାୟାଂ ଶ୍ରୀହରି ଅର୍ଜ୍ଜୁନ ସମ୍ବାଦେ ଚାରିସମ୍ପ୍ରଦା
ଜନ୍ମ କଥନଂ ନାମ ତ୍ରିଷଷ୍ଠିତମୋଽଧ୍ୟାୟଃ ।

---

## ଚତୁଃଷଷ୍ଠିତମ ଅଧ୍ୟାୟ ।

ଅର୍ଜ୍ଜୁନ ବୋଇଲେ କହ ପ୍ରଭୁ ଭଗବାନ । କେଉଁ କେଉଁ ସମ୍ପ୍ରଦାରେ ରହି କେଉଁ ଜନ ॥ ନାମକୁ ଭଜନ କଲେ କହ ତାହା ମୋତେ । ଶ୍ରୀକୃଷ୍ଣଚନ୍ଦ୍ର,

କହନ୍ତି ଅର୍ଜୁନ ଅଗ୍ରତେ ॥ ବଶିଷ୍ଠ ମହର୍ଷି ମୁନି ଅଙ୍ଗିରା ଯେ ଦକ୍ଷ । ଲଭନ୍ତେ ଛତା ଚଢ଼ାଇ ହୋଇଲେ ଏ ମୋକ୍ଷ ॥ ଜାବାଲି କଶ୍ୟପ ମୁନି ବାମଦେବ ଯତି । କପିଳ କଣ୍ୱ ସନକ ଭୃଗୁ ପଉଲସ୍ତି ॥ କଚ ତହ ଋଷ୍ୟଶୃଙ୍ଗ ଅଷ୍ଟାବକ୍ର ମୁନି । ମହାଋଷି ଯାଜ୍ଞବଲ୍କ୍ୟ ଆଉର ଜୈମିନି ॥ ଏମାନେ ଶ୍ରୀ ବଇଷ୍ଣବ ସମ୍ପ୍ରଦାରେ ରହି । ଶ୍ରୀ ଧାମର ମନ୍ତ୍ର ଦେଇ ରକ୍ଷା କଲେ ଦେହୀ ॥ ନାମ ମହା ମନ୍ତ୍ର ଜପି ଆତ୍ମାକୁ ତାରିଲେ । ଆପଣା ଆପଣା ଶିଷ୍ୟବର୍ଗେ ମନ୍ତ୍ର ଦେଲେ ॥ ଏବେ ହେ କହୁବା ବ୍ରହ୍ମ ସମ୍ପ୍ରଦାର ଶିଷ୍ୟ । ଅମ୍ଭୁର ନାରଦ ପଞ୍ଚଶିଖ ବେଦବ୍ୟାସ । ଅଗସ୍ତି ଗୌତମ ମୁନି ଭୃଗୁ ପରାଶର । ରୋମାଞ୍ଚ ଅଟେଷ୍ୟ ମୁନି ଚ୍ୟବନ ଆଉର ॥ ସ୍ଥୂଳଋଷି କୃପାଚଳ ବଇଶମ୍ପାୟନ । ନାସା ଅଗ୍ରକୁ ତିଳକ ଦେଇଲେ ବହନ ॥ ସମସ୍ତେତ ମହାଜ୍ଞାନୀ ଏହୁଁ ଏକ ବଳୀ । ଶ୍ରୀ ପରମହଂସ ଦୀକ୍ଷା ଭଜନ ଯତୁରି ॥ ସମାନ କରି ଯେତେକ ସକଳ ଆତ୍ମାକୁ । ପ୍ରଧାନ କରି ମାନନ୍ତି ନାମ ଭଜନକୁ । ବ୍ରହ୍ମଜ୍ଞାନରେ ସମ୍ପୂର୍ଣ ଯୋଗେ ମହାଜ୍ଞାତା । ସମଦରଶୀ ପଣ୍ଡିତ ଅମୃତଜ୍ଞ ବକ୍ତା ॥ ସକଳ ଦେହରେ ନାରାୟଣଙ୍କୁ ଚାହନ୍ତି । ପ୍ରାଣିଙ୍କି ମୋକ୍ଷ କରଣ ଜ୍ଞାନ ପଦ୍ଧରନ୍ତି ॥ ନିରୋଧ୍ୱ ରଖି ପାରନ୍ତି ଦଶଗୋଟି ଦ୍ୱାର । ମନ ସଂଯମ କରଣ ଟେକନ୍ତି ଓଁକାର ॥ ମୂର୍ଚ୍ଛନା ଉପରେ ପ୍ରାଣ ପୂରାଇ ଭୂରତେ । ଏକଲୟ କରି ବ୍ରହ୍ମ ଚିହ୍ନନ୍ତି ହୃଦଗତେ ॥ ବ୍ରହ୍ମ ସ୍ୱରୂପର ନାମ କରନ୍ତି ଭଜନ । ଏହି ଜପଗୋଟି ପାର୍ଥ ଅଟେ ବ୍ରହ୍ମଜ୍ଞାନ ॥ ଏ ଜପକୁ ତ୍ୟାଗ କଲେ ଦେବ ହେଲେ ମରି । ଏହି ଜପକୁ ହୃଦରେ ଥିବୁ ପାର୍ଥ ଧରି ॥ ଏ ଜପ ବୁଝି ବସିଲେ ସନକାଦି ଜନ । ଏବେ ସନକ ସମ୍ପ୍ରଦା ଶୁଣ ହେ ଅର୍ଜୁନ ॥ ଦୁର୍ବାସା କୌଶିକ ଲୋମଶ ଗାର୍ଗ୍ୟ ହିରଣ୍ୟକ । ସନାତନ ଭରଦ୍ୱାଜ କୋହଳ ସନକ ॥ ବେଦଗର୍ଭ କାଳିନ୍ଦନ ଉଶନା ଗାଲବ । ଉଦ୍ଦାଳକ ଭରଦ୍ୱାଜ ଯେ ମୁନି-ପୁଙ୍ଗବ ॥ କୃଷ୍ଣାମୃତ ଜ୍ଞାନାମୃତ ସୂତ ପୌରାଣିକ । ଏହାଙ୍କର ଜାଣ ହରି ମନ୍ଦର ତିଳକ । ଭୃଗୁଋଷି ମନ୍ଦକର୍ଣ୍ଣ ସଚ୍ଚିଦାନନ୍ଦ ମୁନି । ସନକ ସମ୍ପ୍ରଦା ଏହି ଜାଣ ଫାଲ-ଗୁନି । ନାସାର୍ଗ୍ରେ ହରିମନ୍ଦର ତିଳକ କାଟିଲେ । ମହା ବୈଷ୍ଣବ ବୋଲାଇ ଧ୍ୟାନରେ ବସିଲେ ॥ ଜ୍ଞାନଘନଙ୍କୁ ଧ୍ୟାନ କଲେ ଏ ସନ୍ଦେଶ । ପରମହଂସକୁ ଚାହିଁ କଲେ ଯୋଗ ଲକ୍ଷ୍ୟ ॥ ଷଡ଼ଚକ୍ର ଭେଦ ଯେଉଁ ଶବ୍ଦ ଧ୍ୱନି କରେ । ପଞ୍ଚାଶ ପାଖୁଡ଼ା ପୂର୍ଣ୍ଣ ଶଣ୍ଢିରେ ଭୂମୁରେ ॥ ସେ ଶବଦ ଗୋଟି ଶୁଭେ ଦ୍ୱାଦଶ ପ୍ରକାର । ଏ ଋଷିମାନଙ୍କୁ ଏକା ଯେ କଥା ବୋଇଲ । ରଣି ରଣି ଦ୍ୱଣି ଦ୍ୱଣି ଶଙ୍ଖ ବେଣୀ ନାଦ । ତାଳ କଂସାଳ ମୃଦଙ୍ଗ ବଇଁଶୀ ଶବଦ ॥ ଘଣ୍ଟି ଘଣ୍ଟା ଯାଗୁଛ ଯେ ବୀଣାଯନ୍ତ୍ରରବେ । ଏ ବାର ଧୁନି କାଳଣ ବୋଲଛାନ୍ତେ ଶୁଭେ ॥ ସେ ଶବଦକୁ ଜାଣିଣ ବସନ୍ତି ଏ ମୁନି । ସବୁର ଦେହରେ ଶୁଭେ ନ ପାରେ କେ ଚାହିଁ ॥ ତଥାପି ସେ ବୋଲଛାନ୍ତି ଜାଣି କେ ନ ପାରେ । ଦେଖ ଏହି ଶବଦୋଟି ନୃହଇ ବୋଇଲେ ॥ ଚାହିଁଲେ ସେବଲେ ଏକା ସନକସମ୍ପ୍ରଦା । ଏ ଧର୍ମ ଅଶ୍ରାରେ ପାର୍ଥ ତରେଶ ଜ୍ଞାନପଦ ।

ରୁଦ୍ର ସମ୍ପ୍ରଦା କହିବା ଶୁଣ ସାବଧାନେ । ବାଲ୍ମୀକ ଦଧିଚ ବଶିଷ୍ଠାତ୍ରେୟ ଯେ ଏମାନେ ॥ କଲ୍ପଋଷି ଯଜ୍ଞମୁନି ଦଣ୍ଡଣବା ମୁନି । ମୃକଣ୍ଡ ମାର୍କଣ୍ଡ ଋଷି ମଦର ଏ ଭଲ ॥ ଦେବଋଷି ରାଜଋଷି ବ୍ରହ୍ମଋଷିମାନେ । ସ୍ୱହଂସୀ ପରମହଂସୀ ହଂସୀ ଶୁକ୍ଳ-ଜନେ ॥ ଇଢ, ରଢ, ନଇର୍ବ୍ରଚ ମତ୍ତୁର ଭୃଗୁର । ବଇଣ ଯେ ନୃହଣ୍ଡଳ ଯମ ବୈଶ୍ୱାନର ॥ ବସୁମତୀ ବାସୁକି ଯେ ଯୋଗ ଗ୍ରହ ଇଥି । ଜରଣ ବାର ଯେ ରୁଦ୍ର ସମ୍ପ୍ରଦା ବୋଲାନ୍ତି ॥ ବୃନ୍ଦ ମଧ୍ୟରେ ଘେନିଲେ ହଢ଼ ଏ ଭଲକ । ଏମନ୍ତ ଚାରି ସମ୍ପ୍ରଦା ସମ୍ପାଦ ଗୋଲୋକ । ବ୍ରହ୍ମାଙ୍କ ଗୋଲକେ ତାହା ସମର୍ପଣ କରି । କଳିଯୁଗ ପାଇଁ ଭଣ ଦୋଇଲେ ଶ୍ରୀହରି ॥ ମୋକ୍ଷ ହେବେ ପ୍ରାଣୀଏ ଘେନିଲେ ଏହିମନ୍ତ୍ର । ହରେ ରାମ କୃଷ୍ଣ ଚାରି ସମ୍ପ୍ରଦାର ତତ୍ତ୍ୱ ॥ ଏହା ଶୁଣି ପ୍ରାଣୀମାନେ ମୋକ୍ଷ ହୋଇ ଯିବେ । ଏ ବାକ୍ୟକୁ ସାଧୁଜନେ ମଙ୍ଗଳରେ ନେବେ ॥

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀହରି ଅର୍ଜୁନ ସଂବାଦେ ସମ୍ପ୍ରଦା
ବିଭାଗ କଥନଂ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।

---

## ପଞ୍ଚଦଶ ଅଧ୍ୟାୟ ।

### ଅର୍ଜୁନ ଉବାଚ ।

ଅର୍ଜୁନ ବୋଇଲେ ପ୍ରଭୁ ଶୁଣିମା ହେ ଦେବ । ହରେ ରାମ କୃଷ୍ଣ କେବେ ଜାଣିବେ ମାନବ ॥ ଶ୍ରୀହରି ବୋଇଲେ ତାହା କହିବାକ ଲୋକେ । ନାରାୟଣ କହିଥିଲେ ବ୍ରହ୍ମାଙ୍କୁ ଯେମନ୍ତେ ॥ ହରେ ଶବ୍ଦ ନୃସିଂହରେ ପ୍ରବର୍ତ୍ତିଲ ଜାଣ । ଅମ୍ଭେ ନୃସିଂହ ରୂପରେ ହୋଇଲୁ ଜନମ ॥ ସତ୍ୟଯୁଗେ ଜନ୍ମ ହେଲୁ କଲେବର ବହି । ବଦରିକା ଆଶ୍ରମରେ ନିଜଧାମେ ରହି ॥ ଅବତାର ହେଲୁଁ ଅମ୍ଭେ ସ୍ୱୟଂ ପରଂବ୍ରହ୍ମ । ବ୍ରହ୍ମବଲ୍ଲଭ ହୋଇବ ଆମ୍ଭ ପିତା ନାମ ॥ ଆମ୍ଭ ମାତାଙ୍କର ନାମ ହେବ ଭଗବତୀ । ତାଙ୍କଗର୍ଭେ ଜନ୍ମହେଲୁଁ ଅମ୍ଭେ ବେଦମୂର୍ତ୍ତି । ଶ୍ରୀ ନୃସିଂହ ଶେଷ ନାମେ ବେଦମୂର୍ତ୍ତି ହେଲୁଁ । ଏ ଅବତାରରେ ମୁରଦୈତ୍ୟ ହଣାଗଲୁଁ ॥ ବୈକୁଣ୍ଠରେ ଦ୍ୱାରୀ ଜୟ ବିଜୟ ଯେ ଦୁଇ । ପ୍ରଥମ ଜନ୍ମରେ ମୁର ଦାରୁଣ ସେ ହୋଇ ॥ ମୁରକୁ ମାରି ମୁରାରି ଅମ୍ଭେ ବୋଲାଇଲୁଁ । ଦାରୁଣ ଦୈତ୍ୟଙ୍କୁ ଶେଷ ହାତେ ମରାଇଲୁଁ ॥ ପୁଣି ଆସିବୁ ଅମ୍ଭେ ଏ ଦୈତ୍ୟ ବଇକୁଣ୍ଠ । ସେ ବେଳ ଦଇତ୍ୟ ହେବେ ଅସୁରଙ୍କ ଶ୍ରେଷ୍ଠ ॥ ହିରଣ୍ୟକଶିପୁ ହିରଣାକ୍ଷ ନାମ ହେବ । ତାହାଙ୍କ ପ୍ରତାପ ପୃଥ୍ୱୀ ସହି ନ ପାରିବ ॥ ଅମ୍ଭେ ବେଇ ଅବତାର ସେକାଳେ ହୋଇଲୁଁ । ବରାହରୂପରେ ହିର-ଣାକ୍ଷକୁ ମାରିଲୁଁ ॥ ହିରଣ୍ୟକଶିପୁ କୋଳେ ପ୍ରହ୍ଲାଦ ଜନ୍ମିବ । ଜନ୍ମହେଲା ମାତ୍ରେ ଅମ୍ଭ ନାମକୁ ଭଜିବ ॥ ନାମ ଶୁଣି କୋପକରି ଉଠିବ ହିରଣ୍ୟ । ବୋଲିବ ତାହୁଁ ତୋ ହରି କାହିଁ ରେ ନନ୍ଦନ ॥ ଶୁଣି ଭୟେ ବାଳଶିଶୁ ବୋଲିବ ଦୈତ୍ୟଙ୍କୁ । ସବୁଠାରେ ଅଛନ୍ତି କେହି ନ ଦେଖେ ତାହାଙ୍କୁ ॥ ଦେଖିବାକୁ ଇଚ୍ଛା ଯେବେ ଅଛଇ

ହେ ତାତ । ଏହି ତୁମ୍ଭେ ମୋର ପ୍ରଭୁ ଅଛନ୍ତି ଇପୃତ ॥ ପୂର୍ବମୁଖ ଶୁଣି ଦୈତ୍ୟ ହିରଣ ସତ୍ରେ । ପାଦ ପ୍ରହାର କରିବନ୍ତୋଧେ ସେ ସ୍ତମ୍ଭରେ ॥ ନୃସିଂହରୂପରେ ଅମ୍ଭେ ସେ ସ୍ତମ୍ଭ ବାହାରି । ଦୈତ୍ୟରଛାଇବ ନଖେ ପକାଇଲୁ ଚିରି ॥ ଆମ୍ଭ ହାତେ ହତ ହୋଇ ବୈକୁଣ୍ଠକୁ ଯିବ । ହରି ଅକ୍ଷର ମନ୍ତ୍ରରେ ବ୍ରହ୍ମଦେଖୁଥିବ ॥ ସତ୍ୟ ଯୁଗଅନ୍ତେ ପୁଣି ତ୍ରେତା ଯୁଗେ ଦୈତ୍ୟ । ରାବଣ କୁମ୍ଭ ନାମରେ ହୋଇବେ ସେ ଜାତ ॥ ଅମ୍ଭେ ରାମରୂପ ଧରି ମାରିବୁଁ ତାହାଙ୍କୁ । ରାମ ମନ୍ତ୍ରରେ ଦେଖିବ ସେହି ସେ ବ୍ରହ୍ମଙ୍କୁ ॥ ହରିରେ ମିଶିଣ ରାମ ରହିବ ଧରଣୀ । ସେ ଦୁହେଁ ହୋଇବେ ଶାଲ୍ୱ ଶିଶୁପାଳ ପୁଣି ॥ ଅମ୍ଭେ କୃଷ୍ଣରୂପ ଧରି ରଣରେ ଛେଦିବୁଁ । ଅସୁର ଜନ୍ମରୁ ତାଙ୍କୁ ମୁକତ କରିବୁ ॥ ତେବେ ହରେ ରାମରେ ଯେ କୃଷ୍ଣ ମିଶିଯିବ । ମହାମନ୍ତ୍ର ହୋଇ ସବୁ କାଳେ ରହିଥିବ ॥ ହରେ ରାମ କୃଷ୍ଣ ମହାମନ୍ତ୍ର ପୃଥ୍ୱୀଯାକେ । ଘୋଷିବେ ଗୁରୁ କରଣ ସଂସାରର ଲୋକେ ॥ ନ ଜାଣନ୍ତି ମୋର ନାମ ଅନ୍ତ ପଶୁପତି । ତୁମ୍ଭେ . ଜନ୍ମ ନୋହିଣ୍ଣୁ ହେଲାଣି ମନ୍ତ୍ର ମୂର୍ତ୍ତି ॥ ବିଧାତା କାହୁଁ ପାଇବ ମୋ ନାମର ଅନ୍ତ । ଅନନ୍ତ ମହିମା ତାର ଅଶ୍ରୁତ ଅବ୍ୟକ୍ତ ॥ ସାଧୁଙ୍କ ହିତେ ବୈକୁଣ୍ଠୁ ଅସେ ଅବତରି । ଦୁଷ୍ଟ ଜମାନ ନାଶିଣ ଧର୍ମରକ୍ଷା କରି ॥ ଯୁଗେ ଯୁଗେ ଜପୁତ ସେ ବୈକୁଣ୍ଠକୁ ଯାଏ । ମନ ଦେଇ ଶୁଣ ପାଣ୍ଡୁ ରାଜାର ତନୟେ ॥ ସତ୍ୟ ତ୍ରେତା ଦ୍ୱାପରର ଅନ୍ତେ କଳି ହେବ । ହରେ ରାମ କୃଷ୍ଣ ମହାମନ୍ତ୍ର ଜପୁଥିବ ॥ ଗୁରୁ କରି ଶୁଣିବେଟି ଯେବେ ମହାମନ୍ତ୍ର । ତେବେ ଯାଇଁ ପ୍ରାଣୀମାନେ ହୋଇବେ ପବିତ୍ର ॥ ଶୁଣିକରି ଅରଜୁନ ହୋଇଲେ ସନ୍ତୋଷ । ଲେଖିଲା ରଙ୍ଗାପୁର ଶନ୍ତି ତାଙ୍କ ଦାସ ॥

ଇତି ଶ୍ରୀ ନାମରତ୍ନ ଗୀତାୟାଂ ଶ୍ରୀହରି ଅର୍ଜୁନ ସମ୍ବାଦେ ମହାମନ୍ତ୍ର
ସ୍ୱରୂପବର୍ଣ୍ଣନଂ ନାମ ପଞ୍ଚଷଷ୍ଠି ତମୋଽଧ୍ୟାୟଃ ।

---

## ଷଷ୍ଠଷଷ୍ଠି ଅଧ୍ୟାୟ ।

### ଅର୍ଜୁନ ଉବାଚ ।

ଅର୍ଜୁନ ବୋଇଲେ ଅହେ ବୃଷ୍ଣିବଂଶଜ । କଳିଯୁଗରେ ହୋଇବେ ଯେତେକ ମାନବ ॥ କିଏ କେଉଁ ମନ୍ତ୍ର ନେବେ ତାହା ମତେ କହ ॥ ଗୁରୁ ସମ୍ପ୍ରଦା ଦଲଗ କହ ଦୟାମୟ ॥ କିଏ ସେ କେଉଁ ଧର୍ମରୁ ଉଦ୍ଧରିବ ପୁଣି । କେଉଁ ଦ୍ୱାର କେଉଁ ଧାମ କହ ଚକ୍ରପାଣି ॥ ଶ୍ରୀହରି ବୋଇଲେ ଶୁଣ ଧନଞ୍ଜୟ ବୀର । ଯେମନ୍ତେ ହରି କହିଲେ ବ୍ରହ୍ମାଙ୍କ ଆଗର ॥ ଯେ ଜନ ହୋଇବ ଯେଉଁ ସମ୍ପ୍ରଦାର ଗୁରୁ । ତାହାଙ୍କର ନାମ ଶୁଣ ଶୁଣ ମୋ ମୁଖରୁ ॥ ଆଦ୍ୟ ମଧ୍ୟ ପ୍ରାନ୍ତ ମୋତେ ସଦା କାଳେ ସରି । ତୁମ୍ଭେ ସିନା ଜନ୍ମ ହୋଇ ଯାଉ ଥାଅ ମରି ॥ ନବ ଚୈତନ୍ୟ ସ୍ୱରୂପ ପ୍ରକାଶ ସେ ରୂପ । ଏ ଗୁରୁ ଧର୍ମର ପାଥ ଜାଣ ସେହି ବାପ ॥ ଏହି ଗୁରୁରୂପ ଗୁରୁଶୂନ୍ୟ

ଅବୋଉଲେ । ଶୂନ୍ ଧାମ ଶୂନ୍ୟକ୍ଷେତ୍ର ଶୂନ୍ୟଦ୍ୱାର ହେଲେ ॥ ଏ ଶୂନ୍ ସ୍ୱାମିର ଶୂନ୍ୟବେଦଠି ପ୍ରମାଣ । ଅର୍ଜୁନ ଶୁଣନ୍ତୁ କହୁଛନ୍ତି ନାରାୟଣ ॥ ଯେଉଁ ସମ୍ପ୍ରଦାୟ ଗୁରୁ ଯେଉଁ ସ୍ୱାମୀ ହେବେ । ତାଙ୍କ ନାମମାନ କହିଦେବା ଶୁଣ ଏବେ ॥ ରାମାନନ୍ଦ ହେବେ ଜାଣ ଶ୍ରୀସମ୍ପ୍ରଦା ଗୁରୁ । ଶ୍ରୀ ମାଧବାନନ୍ଦ ବ୍ରହ୍ମ ସମ୍ପ୍ରଦାୟ ଗୁରୁ ॥ ସନକ ସମ୍ପ୍ରଦାୟ ଗୁରୁ ଉମାନନ୍ଦ । ରୁଦ୍ର ସମ୍ପ୍ରଦାୟ ଗୁରୁ ହେବେ ଶ୍ୟାମାନନ୍ଦ ॥ ଏ ଶୂନ୍ ପଞ୍ଜିରେ ଶୂନ୍ ସମ୍ପ୍ରଦାୟବାସୀ । ପ୍ରାଣୀଙ୍କି ମୋକ୍ଷ କରିବେ ମର୍ତ୍ତ୍ୟ ଅବତରି ॥ ନାମବ୍ରହ୍ମ ମହାମନ୍ତ୍ର କର୍ଣ୍ଣରେ କହିବେ । ବୈକୁଣ୍ଠ ଶୂନ୍ୟଦ୍ୱାର ଶୂନ୍ ଅବୋଉଳବେ ॥ ମାଧବାନନ୍ଦର ଦ୍ୱାର ଅଟେ ପୂର୍ବଦ୍ୱାର । ପଶ୍ଚିମ ଦ୍ୱାର ଅଟଇ ରାମାନନ୍ଦଙ୍କର ॥ ଉମାନନ୍ଦଙ୍କର ଦ୍ୱାର ଉତ୍ତର ଅଟଇ । ଶ୍ୟାମାନନ୍ଦଙ୍କ ଦୁଆର ଦକ୍ଷିଣ ବୋଲାଇ ॥ ଏ ଶୂନ୍ ପଞ୍ଜିରେ ଶୂନ୍ ଦ୍ୱାରକୁ ଧାରଣା । ତୁମ୍ଭ ଆଗରେ କହିଲି ଦ୍ୱାରର ଠିକଣା ॥ ଏହି ଶୂନ୍ ପଞ୍ଜିଙ୍କ ହୃଦେ ନାହିଁ ଛିଦ୍ର । ନ ଜାଣି ପାପିଷ୍ଠ ଜନେ ଲଗାନ୍ତି ଯେ ଦ୍ୱନ୍ଦ ॥ ଶ୍ରୀ ବଇକୁଣ୍ଠର ମୋର ଶୂନ୍ୟଦ୍ୱାର ସବୁ । ଯେ ଯେଉଁ ଦ୍ୱାରେ ଯେହଲେ ଏକରୂପ ହବୁ ॥ ଏ ଦ୍ୱାରକୁ ଏକା ପରଦ୍ୱାର ସିନା ଭିନ୍ନ । ଏକଥା ମନେ ପାଞ୍ଚନ୍ତି ସୁପଣ୍ଡିତ ଜନ ॥ ଶ୍ରୀରାମାନନ୍ଦଗୁରୁଙ୍କ ପନ୍ଥା ଶୁଣ ଏବେ । ସଂସାର ଲୋକଙ୍କ ହିତେ ପଶୁରିଲ ଯେବେ ॥ ତ୍ରୈଲୋକ୍ୟର ମହାବ୍ରହ୍ମ ଯେଉଁ ନାରାୟଣ । ଯାବତ ଶବଦ ଅଛି ତହିଁରେ ସେ ପୂର୍ଣ୍ଣ ॥ ସେହି ଶବଦ ସ୍ୱରୂପ ଦେହେ ଥିବେ ଧ୍ୱନି । ସେହି ଧ୍ୱନିକି ଓଁକାର ବୋଲେ ବ୍ରହ୍ମଜ୍ଞାନୀ ॥ ଜ୍ଞାନଭିନ୍ନ ଆନବାଟ ନ ପାରେ କେ ପିଣ୍ଡେ । ବୁଝିଲେ ବ୍ରହ୍ମପୁରୁଷ ପୂରିଛି ବ୍ରହ୍ମାଣ୍ଡେ ॥ ଥେହିଲେ ଅଛଦ୍ରେ ଯେସନେ ତୈଳ ଧାରା ବହେ । ଶୁଣଇ ନାନାବ ବାଦ୍ୟ ଯେସନେ ଏକା ପ୍ରାପ୍ତେ ॥ ସେହିରୂପେ ବ୍ରହ୍ମଅଛି ଅଛିଦ୍ରରେ ପୂରି । ଉମକ୍ଷି ସ୍ୱରୂପ ଦେହେ ଧ୍ୱନିକି ଆବୋରି ॥ ସବୁଠାରେ ପୂରି ବ୍ରହ୍ମ ଘଟେ ପୂର୍ଣ୍ଣ ହେଲା । ଧାତୁ ପାଷାଣ ଅବର ତରୁ ଗୁଳ୍ମ ଶିଳା ॥ ଗୁଣାବ ଯନ୍ତ୍ରକୁ ଘେନି ଯେବେ ଦ୍ରବ୍ୟ ଭେଦ । ସବୁସ୍ଥାନରେ ବଜାନ୍ତି ବସି ଥିବ ନାଦ । ସେହି ନାଦରୁ ସୁବେଦ ହୋଇଲା ବାହାର । ତହିଁରୁ ଜନମ ହେଲା ଦୁଇ ଯେ ଅକ୍ଷର ॥ ସେହି ବେନି ଅକ୍ଷରକୁ କିଏ ଉଡାଇ । ତହିଁ ସ୍ୱାସ୍ଥ ଦବସ ବାଇ ପ୍ରାପ୍ତ ହୋଇ ॥ ପଦାରେ ନ ପକାନ୍ତି ସେ ହେଲା ଗୁପ୍ତବାଣୀ । ଭଜିଲେ କୃଷ୍ଣ ଜାକ ତା ମହିମା ଜାଣି ॥ ଅନ୍ୟ ଅକ୍ଷର ଗୋଟିକ ଜପିଲା ଶିବଲେ । ପ୍ରାନ୍ତ ଅକ୍ଷରକୁ ସେ ନ ମାନେ ହେତେବେଳେ ॥ ବୋଲେ ସ୍ୱଛ ପାହିଗଲେ ମୁକ୍ତିସ କରିବ । ମ—ଅକ୍ଷରକୁ ଭଜିଲା ଜନ ମରିଯିବ ॥ ମ—ଅକ୍ଷରକୁ ଭଜିଲେ ବଧ ହେବ ମୋର । ଏମନ୍ତ ପାଇଁ ଥେହିଲା ସ୍ୱ—ଅକ୍ଷରେ ସ୍ୱର ॥ ଶରୀରରେ ରକ୍ଷି ଷଡ଼ରିପି ଭେଦ ନେଲା । ଜୀବନ ଛଡ ଦୁଆରେ ନେଇ ଉଦେ କଲା ॥ କିଯୁକର ଥେହିଲା ସେ ପୁଣି ବ୍ରହ୍ମରନ୍ଧ୍ରେ । ରନ୍ଧ୍ରେ ଥେହିବାରୁ ଉଦ୍ଧିଗଲା ଯାବଛନ୍ଦେ ॥ ରୌପ୍ୟଅଶୀ ମନ୍ଦ ବହିଗଲାଣି ତା ଖେଳ । ତୁମ୍ଭ ଆଗରେ କହିଲି ଅର୍ଜୁନ ଏ ଦୃଢ ॥ ଏହିରୂପେ କେତେଯୁଗ ପ୍ରଳୟ ହୋଇବ ।

ସଙ୍ଗେ ମରିବେ କୃଷ୍ଣ କାକ ନ ମରିବ ॥ ଏ ଯେଉଁ କୃଷ୍ଣ ପକ୍ଷୀ ନୁହେ କେବେ ସ୍ଥାନ । କୃଷ୍ଣ ଶରୀର ଯାକ ସବୁ ବ୍ରହ୍ମଜ୍ଞାନ ॥ ରାମ ଅମର କୃଷ୍ଣ ମରିବ କାହିଁକି । କୃଷ୍ଣ ମଲେ ରାଆକୁ ନ ପାରେ କେ ଚିହ୍ନି ॥ ଏଣୁକରି ରା—ଅକ୍ଷର କୃଷ୍ଣର ଦେହୀ । ରାମ ନ ମରଇ କେବେ ସେହୁ ନ ମରଇ । କୃଷ୍ଣ ହେତୁ ଜନ୍ମିବ ରାମ ନାମ ବାଣୀ । ଜନମ ହୋଇ ପୂରିବ ଅଶେଷ ଧରଣୀ । ଧରଣୀରେ ପୂରିବାରୁ ସକଳେ ଜାଣିବେ । କୃଷ୍ଣ ଗୁରୁ କରିଣ ଉପଦେଶ ନେବେ ॥ ଉପଦେଶ ପାଇ ସେହୁ ଛାଡ଼ିବେ ଅମ୍ବାକୁ । ଗୋରକ୍ଷ ଅମ୍ବାକୁ ଛାଡ଼ି ଭଜିବେ ମନ୍ତ୍ରକୁ । ମନ୍ତ୍ର ବ୍ରହ୍ମ ବୋଲାଇବେ ସେହୁ ମହା ଯତି । ନାମର ମହିମା ଗୋଟି ଏକା ସେ ଜାଣନ୍ତି ॥ ସେ ଗୋରକ୍ଷ ଶିଷ୍ୟ ହୋଇବେ କହୁବା ଅର୍ଜୁନ । ଅଷ୍ଟାଢ ନାମରେ ସାଧୁ ଥିଲେ ଏକ-ଜନ ॥ ତାହାଙ୍କ ଭଉଣୀ ବାନ୍ଧୁଥିବ ଏହୁ ମଢ଼ୀ । ଯୋଗୀ ବାନ୍ଧ କରି ଯେବେ ଯୋଗ ଦେବ କହୁ ॥ ନାହିଁ ବୋଇଲେ ତା ଦେହେ ନ ରହିବ କ୍ଳେଶ । ଏସ ସିଦ୍ଧ ସାଧୁ ହୋଇବ ଗୋରକ୍ଷଙ୍କ ଶିଷ୍ୟ ॥ ଗୋବିନ୍ଦଚନ୍ଦ୍ରର ମାତା ନାମ ମୁକ୍ତାଦେଈ । ମହା-ଯୋଗୀ ଗୋରକ୍ଷଙ୍କ ଶିଷ୍ୟ ହେବ ସେହୁ ॥ ଅଠର ବର୍ଷ ଏକଇ ବଳାଇ ସେ ନାରୀ । ରାଜ୍ୟରେ ରାଜା ନ କରି ଦେବ ଯୋଗୀ କରି ॥ ଅଷ୍ଟାର ସାଧୁର ଶିଷ୍ୟ ହୋଇବ ଗୋଦଇ । ସେ ଯାଇ ରହିବେ ବୃନ୍ଦାବନର ମଧ୍ୟରେ ॥ ସେହୁ ସେଠାବରେ ଶିଷ୍ୟ କରିବେ ଭାରତି । ସେ ଭାରତି ବୋଲାଇବେ ପୁରୀ ମହାଯତି ॥ ତାହାଙ୍କର ଶିଷ୍ୟ ଶିକ୍ଷା ଅଲ୍ଲର୍ଯ୍ୟ ହୋଇବେ । ଶ୍ରୀ ସମ୍ପ୍ରଦାରେ ସେ ମନ୍ତ୍ର ଅର୍ଜୁନ କହିବେ ॥ ରଖିବେ ଗୋପ୍ୟ କରିଣ ମହିମାକୁ ଚିହ୍ନି । ରାମ ନାମ ପୃଥିବୀକି ରହିଥିବ ଢାଙ୍କି । ରାମାନନ୍ଦ ଅବତାର ହେବେ ଏ ସମୟେ । ରାମନାମ ମହାମନ୍ତ୍ର ଜପିବେ ହୃଦୟେ ॥ ଶ୍ରୀ ମହାବ୍ରହ୍ମ ସଂପ୍ରଦା କରିବେ ପ୍ରକାଶ । ପ୍ରାଣୀମାନଙ୍କ କର୍ଣ୍ଣରେ ଦେବେ ଉପ-ଦେଶ ॥ ଏ ମହୀରେ ସ୍ୱାମାନନ୍ଦ ଧର୍ମ ଯିବେ ଥୋଇ । ତୁଳସୀଦାସଙ୍କୁ ବଇଷ୍ଣବ ବାନା ଦେଇ ॥ ଶିଷ୍ୟ କରି ମହାମନ୍ତ୍ର ତାଙ୍କ କର୍ଣ୍ଣେ ଦେବେ । ରାମାୟଣ ସେ ତୁଳସୀ ଦାସ ଯେ ଲେଖିବେ ॥ ସେ ତୁଳସୀ ରାମାୟଣ ଯେ ଜନ ଶୁଣିବ । ଭବ ବନ୍ଧନ ମୋଚନ ତାହାର ହୋଇବ ॥ ତୁଳସୀ ଦାସ ଚରଣୀ ଶୁଣ ହେ ଅର୍ଜୁନ । ରାମ ପ୍ରତିମାକୁ ଭକ୍ତ୍ୟ କରନ୍ତି ପୂଜନ ॥ ନମସ୍କାର ନ କରନ୍ତି ଆନ ଦେବତାଙ୍କୁ । ଏକ-ଦିନେ ଯାଇଥିଲେ ସେ ବୃନ୍ଦାବନକୁ ॥ ନବଜଳଧର ମୂର୍ତ୍ତି ଯେ କୃଷ୍ଣ ପ୍ରତିମା । ଶିବ ବ୍ରହ୍ମା ନ ଜାଣନ୍ତି ଯାହାଙ୍କ ମହିମା ॥ ସେ କୃଷ୍ଣମୂର୍ତ୍ତି ଦର୍ଶନ କଲେ ବୃନ୍ଦାବନେ । ତୁଳସୀକି ଦେଖି ପ୍ରଭୁ ଚିନ୍ତରନ୍ତି ମନେ ॥ ନମସ୍କାର ନ କରିବ ଏ ତୁଳସୀ ଦାସ । ଲୋକେ ଦେଖି ନ କରିବେ ମୋଠାରେ ବିଶ୍ୱାସ ॥ ଯେବେ ନ ଧରିବି ଏଥେ ଶ୍ରୀରାମ ମୂରତି । ଏ ମହାଭକତ ଯିବ କରି ଦୁଃଖ ମତି । ଏମନ୍ତ ଚିନ୍ତି ପ୍ରଭୁ ସେ ଦେବ ଆଲୟେ । ଶ୍ରୀରାମ ମୂରତି ଧରି କଲେକ ଉଦୟେ ॥ ହସ୍ତରେ କୋଦଣ୍ଡ କାଣ୍ଡ ପାଦୁଅଛୁ ଶୋଭା । ନବ ଦୂର୍ବାଦଳ ପ୍ରାୟ ଦିଶୁଅଛି ପ୍ରଭା ॥ ତୁଳସୀ ଦାସ ଦେଖିଣ

ଶ୍ରୀରାମ ମୂରତି । ଚରଣ ତଳରେ ପଡ଼ି କରିବ ଯେ ସ୍ତୁତି ॥ ଏମନ୍ତ ମହିମା ଜାଣ ତୁଳସୀ ଦାସର । ତାଂ ପାଇଁ ଶ୍ରୀରାମ ମୂର୍ତ୍ତି ଧରିବେ ଶ୍ରୀଧର ॥ ମୁରଲୀ ଦାସେ ହୋଇବେ ମନ୍ତ୍ରେ ଅଧିକାରୀ । ଶାଳଗ୍ରାମଙ୍କୁ ପୂଜିବେ ସେହି ଯତ୍ନକରି ॥ ଯେତେବେଳେ ମିଳି ଯିବ ଯେତେ ଦ୍ରବ୍ୟ ଆସି । ପ୍ରାଣିଙ୍କ ମୁଖରେ ତାହା ଦେଉଥିବେ ବସି ॥ ଅମୃତ ଭଳି ଆନ ଦେବ ନ ମାନିବେ ସେହି । ପଞ୍ଚବଟୀ ଅରଣ୍ୟରେ ଦାସେ ଥିବେରହି । ତା ମୁଖଁ ରାମତାରକ ଉପନ୍ତି ଶୁଣିବେ । ଏରୂପରେ ଅନନ୍ତ ଶ୍ରୀସମ୍ପ୍ରଦା ବୋଧିବେ ॥ ଧାମକ୍ଷେତ୍ର ତାହାଙ୍କର ଏ ପରମ ଧନ୍ୟ । ଶାଖା ପ୍ରବର ତାଙ୍କର ଶୁଣ ହୋ ଅର୍ଜୁନ । ଦେବଙ୍କ ମଧ୍ୟରେ ସାମବେଦ ତାହାଙ୍କର । ଅଙ୍ଗୁଷ୍ଟିରେ ଗଣାହୁଏ ଉଲନ ବେଦର ॥ ସେ ବେଦର ହଂସ ଦୀକ୍ଷା ଗୋତ୍ର ଯେ ଅବ୍ୟକ୍ତ । ଷଡଚକ୍ର ଅସନ ତା ଉର୍ମୀଲ୍ୟ ପ୍ରଣବ ॥ ଭଜନ ଉପାସନ ଶ୍ରୀ ରାମ ନାରାୟଣ । ପ୍ରଣବଟି ମୂଳମନ୍ତ୍ର ସୋମନାଥ ଧାମ ॥ ଉତ୍ତରକୂଟ ଧର୍ମଶାଳା ଅଯୋଧ୍ୟା କୈଲାସ । ପଞ୍ଚବଟୀ ପରିକ୍ରମା ଫଲ୍ଗୁ ତୀର୍ଥବାସ ॥ ମହାଗ୍ନି କ୍ଷେତ୍ର ଶ୍ରୀହରି ନାମ ମାଳା କହି । ଗ୍ରମ ଉପାସକ ଜାଣ ବଶିଷ୍ଠ ଅଟଇ ॥ ଗୋଦାବରୀ ଆଚମନ ଶ୍ରୀନଦ୍ ତିଲକ । ଶ୍ରୀ ଦେବତା ହନୁମାନ ରକ୍ଷତି ଶାନ୍ତିକ ॥ ଶ୍ରୀରାମ ଗାୟତ୍ରୀ ନାମ ଅଖଣ୍ଡାର୍ଥ ଜାଣ । ଶବଦ ଦ୍ୱାର . ପରମହଂସ ମନ୍ତ୍ର ଧ୍ୟାନ ॥ ଏବେ ଅଷ୍ଟ ସଖୀଙ୍କର ଶୁଣ ନାମ ପ୍ରଜ୍ଞା । ଲକ୍ଷଣା ସଖୀ ଶ୍ୟାମଳା ସୁହଂସୀ ସୁବଜ୍ଞା ॥ ଆବର ଯେ ବଇସିଙ୍ଗାବେଳରୂପା ଜାଣ । ଚନ୍ଦ୍ରରେଖା ଚନ୍ଦ୍ରାବଳୀ ଏ ଆଠ ପ୍ରମାଣ ॥ ଶ୍ରୀରଘୁନାଥଙ୍କ ସେବୁଥାନ୍ତି ଅଷ୍ଟସଖୀ । ଏ କଥା ଅନ୍ୟ କହି କେ ନ ପାରଇ ଲେଖି ॥ ଶିରୀସମ୍ପ୍ରଦାର ଆଣ୍ଡା ହେଲେ ରାମାନନ୍ଦୀ । ସକଳେ ଏ ସମ୍ପ୍ରଦାକୁ ଏହିଠାରୁ କହି ॥ ଏହିରୂପେ ରାମାନନ୍ଦ ସମ୍ପ୍ରଦା ଲକ୍ଷଣ । ମାଧବାନନ୍ଦର ଧର୍ମ କହୁଅଛୁ ଶୁଣ ॥ ପ୍ରଥମରୁ ଏ ସମ୍ପ୍ରଦା ଅଟେ ଧ୍ୟାନମୂର୍ତ୍ତି । ଓଁକାର ଯେ ତତ୍ତ୍ୱ କହି ହରି ମହାମନ୍ତ୍ର ॥ ଆଦ୍ୟରୁ ବୈକୁଣ୍ଠନାଥ ସ୍ୱାମୀଙ୍କ ମୁଖରୁ । ଏକ ଅକ୍ଷରେ ପ୍ରକାଶ ପାଇଲା ଶରୀରୁ ॥ ସେହି ଅକ୍ଷରକୁ ହରି ଦ୍ୱି ଅକ୍ଷର କଲେ । ଅନନ୍ତ ତାହାକୁ ଅନ୍ତର୍ଗତରେ ଧଇଲେ ॥ ବିଧାତାଙ୍କୁ କହିଲେ ସେ ଉଦ୍ଦଣ ଅକ୍ଷର । ଚାରିଶ୍ଳୋକରେ ଭଣିଲେ ତାହା ବେଦବର ॥ ନରନାରାୟଣଙ୍କୁ ତା ଶୁଣାଇଲେ ପୁଣି । ନାରଦ ଆଗେ କହିଲେ ନାରାୟଣ ଜାଣି ॥ ଅନୁରାଗେ ଦଶ ଶ୍ଳୋକେ କହିଲେ ବୁଝାଇ । କର୍ଣ୍ଣପଥେ ଶୁଣି ତାହା ନାରଦ ଗୋସାଇଁ ॥ ବ୍ୟାସଙ୍କୁ ବୁଝାଇ ଶତ ଶ୍ଳୋକରେ କହିବେ । ନାରଦଙ୍କ ଦୀକ୍ଷାପାଇ ବେଦବ୍ୟାସଦେବେ ॥ ଅଠର ସହସ୍ର ଶ୍ଳୋକ କରିବେକ ପୁଣି । ପ୍ରସନ୍ନେ ଶୁକଦେବଙ୍କ ହସ୍ତେ ଦେବେ ଆଣି ॥ ସେ ଶୁକ ବ୍ରହ୍ମ ପୁରୁଷ ବ୍ୟାସଙ୍କର ସୁତ । ସେ ଗ୍ରନ୍ଥ ଗୋଷ୍ଠିର ନାମ ଦେବେ ଭାଗବତ ॥ ପରୀକ୍ଷିତ ରାଜା ଆଗେ କହିବେ ବୁଝାଇ । ଶ୍ରୀ ଭାଗବତ ତତ୍ତ୍ୱ କର୍ଣ୍ଣେ ଦେବେ କହି ॥ ପରୀକ୍ଷିତ ମୁନିଙ୍କଠୁ ମୁକ୍ତିରେ ତରିବ । ସେହି ନାମ ମହାମନ୍ତ୍ର ପାପୀ ଉଦ୍ଧାରିବ ॥ ବ୍ରହ୍ମ ସମ୍ପ୍ରଦାର ପୁଣ୍ୟ କ୍ଷେତ୍ରଧାମ ଶୁଣ । ଧର୍ମଶାଳା ବଦରିକା କ୍ଷେତ୍ର ପୁରୁଷୋତ୍ତମ ॥ ନୃସିଂହ ସେବକ

ସ୍ପଷ୍ଟ ଯଜ୍ଞ ଗୃହବେଦ । ନାସିକା ଦୁଆର ଜାଣ ଅଗ୍ରଯଂଶ ନାରଦ ॥ ଦେବତା ଶ୍ରୀ ଜଗନ୍ନାଥ ଇଷ୍ଟ ମହାଲକ୍ଷ୍ମୀ । ଶାଖା ଯେ ଅନନ୍ତ ଗୋତ୍ର ଶ୍ରୀ ଅଚ୍ୟୁତ ସ୍ୱାମୀ ॥ ମନ୍ତ୍ର ଯନ୍ତ୍ର ସ୍ଥଳ ଶିରି ହରି ନାମ ମାଳା । ଅଜପା ବ୍ରହ୍ମ ଗାୟତ୍ରୀ ଜପା ଯୋଗ ଶୀଳା ॥ ତୀର୍ଥ ତୀର୍ଥସ୍ଥଳ ଜାଣ ପରଂବ୍ରହ୍ମ ଧ୍ୟାନ । ନଦୀର ନାମ ଯେ ଗଙ୍ଗା ଆନନ୍ଦ କାନନ ॥ ଜ୍ଞାନ ଅମୃଜ୍ଞାନ ସେବା ପବନ ଓଲଟ । ସଂଜ୍ଞା ନାମ ଦେବ କଳ୍ପ ବୃକ୍ଷ କଳ୍ପବଟ ॥ ଭକତି ନାମ ସ୍ମରଣ ମୁକତି ସାଯୁଜ୍ୟ । ଭାବ ସମଦରଶୀ ଯେ ରସ ଅଇଶ୍ୱର୍ଯ୍ୟ ॥ ମନୋହର ନିର୍ମାଲ୍ୟ ତାର ଦଳାଙ୍କ ରହସ୍ୟ । ଦ୍ୱାର ବୈକୁଣ୍ଠ ଆସନ ତା ନନ୍ଦୀଘୋଷ ॥ ଅଷ୍ଟ ସଖୀଙ୍କର ନାମ ଶୁଣ ହେ ଅର୍ଜୁନ । କହୁଅଛୁ ତୋ ଆଗରେ ଗୁପତ ବଚନ ॥ ଶତରୂପା ସୁଲକ୍ଷଣା ସୁଲଗ୍ନା ସୁକାନ୍ତ । ସୁଦୁର୍ଗା ସୁ ବ୍ରାହ୍ମୀ ଯେ ସୁରେଖା ସୁରତି । ଏହି ଆଠଗୋଟି ସଖୀ ସେବୁଥାନ୍ତି ନିତ୍ୟ । ଏହାଙ୍କ ରୂପରେ ସେହୁ ସର୍ବଦା ମୋହିତ । ହରେ ରାମ କୃଷ୍ଣ ମହାମନ୍ତ୍ର ମୋକ୍ଷଦାତା । ସେନନ୍ତି ତିଳକ କରି କରୁଣାର୍ଦ୍ର ଚିତ୍ତା ॥ ନାସା ଅଗ୍ରରୁ ସଜାଇ ତିଳକ କରନ୍ତି । ହରିମନ୍ଦିର ତା ନାମ ବୈଷ୍ଣବେ କହନ୍ତି ॥ ଏ ତିଳକ ଗୋଟି ମୃତ୍ୟୁ କାଳକୁ ଯେ ମୂଳ । ସେଥିଥିଲେ ଏ ତିଳକ ନ ପଶଇ କାଳ । ସର୍ବଭୂତ ନାସ୍ତପ୍ରଣ ଏ ଧର୍ମର ହେତୁ । ମୂଢ଼ ଏହା ନ ନ ବୁଝିଣ ଧରେ ବାଦ କେତୁ ॥ ସମ୍ପ୍ରଦା ନ ବୁଝି ବାଦ କରନ୍ତି ଅଜ୍ଞାନେ । ବୈଷ୍ଣବ ଧର୍ମ ନିନ୍ଦନ୍ତି ଲୋକେ ମୂଢ଼ପଣେ ॥ ଆମ୍ଭ ଧର୍ମ ବଡ଼ ବୋଲି ଆପେ ହୋନ୍ତି ବଡ଼ । ନ ବୋଲନ୍ତି ସବୁ ଏକ ବ୍ରହ୍ମ ବୃକ୍ଷି ଝୋଡ଼ ॥ ଯେ ଯେଉଁ ଭାବରେ ଦଜ୍ ଏକା ନରହରି । ଏହା ନ ପାଶୁ ବସନ୍ତି ମୂଢ଼େ ବାଦ ଧରି ॥ ଯେତେକ ଲୋକ ଅଛନ୍ତି ଅସତ ପଣ୍ଡିତ । ସମ୍ପ୍ରଦା ନିନ୍ଦା କରନ୍ତି ହୋଇ ମଦମତ୍ତ ॥ ଷଡ଼ଜନକ ଧର୍ମ ପନ୍ଥା କହିବା ହୋ ଶୁଣ । ଏ ଧର୍ମ ନ ସେବଲେ ଏ ପିଣ୍ଡ ଅକାରଣ ॥ ରାମାନନ୍ଦ ସମ୍ପ୍ରଦାର ଗୁଣ ଏବେ ଭେଦ । ବୈକୁଣ୍ଠନାଥଙ୍କ ମୁଖୁ ଜାତ ସ୍ୱରବେଦ ॥ ସେ ସ୍ୱରବେଦ ଯହୁଁ ଟି ଏକରୁ ହୋଇଲା । ଏକାନ୍ତ ହୁଅନ୍ତେ ସ୍ୱାଥ ଶବଦ ଫେଡ଼ିଲା ॥ ସ୍ୱାଥ ଶବଦକୁ ଗୁପ୍ତି ଧାଇଁ ସନକାଦ । ସ୍ୱାଥକୁ ଧରନ୍ତେ ସ୍ୱାଧା ଜାତ ହୁଦକେଦ ॥ ସ୍ୱାକୁ ତହିଁ ସ୍ୱାବ ଳଲେ ଧା ପରମ ପଦ । ପାଇଲ ଅର୍ଜୁନ ଏବେ ରାଧା ନାମ ଭେଦ ॥ ଏହି ରାଧାକୁ ଶ୍ରୀକୃଷ୍ଣ ନିତ୍ୟସ୍ଥଳେ ଘେନି । ଅନୁକ୍ଷଣେ ରହିଛନ୍ତି ଦିବସ ରଜନୀ ॥ ସେ ରାଧା ନାମ ଜପନ୍ତି ମୁରଲୀ ସ୍ୱରରେ । ସେ ରାଧା ନାମ ପୂଜନ୍ତି ହୃଦକମଳରେ ॥ ସେ ରାଧାରେ ଏତେ ଲିପ୍ତ ଶ୍ରୀକୃଷ୍ଣର ଯେଣୁ । ଜୀବଙ୍କ ହୃଦେ ଭଜନ ହେଉଅଛୁ ତେଣୁ ॥ ସେହି ଭଜନ ଗୋଟି ଯେ ଅଟେ ବ୍ରହ୍ମଜ୍ଞାନ । ବେଦ ଅଗ୍ନିତ ଷୋଡ଼ଶ ଅମୃତ ଭଜନ ॥ ଦନକୁ ଏତେ ଲେଖାଏଁ ଭଜନ ଯେ କରୁଁ । ଯହିଁରେ ଜନମ ହୋଇ ଶରୀରକୁ ଧରୁଁ ॥ ସେ ଭଜନ ନ ବୁଝିଲି ଲୋକ ମତି ଭୋଳ । ବୋଲଇ ଅମୃତ ରାଧା ନାମ ଏକା ମୂଳ ॥ ସବୁରି ଶରୀରେ ରାଧା ଶବଦ ରାଜୁଛି । ସେହି ରାଧା ପଦ ଧାତା ବ୍ରହ୍ମା ବୋଲାଉଛି ॥ ଭଜନ ତରି ଦଉଲେ ସିନା ଯାଇ ତରି । ନୋହିଲେ ଦବରା

ନାଚେ ଉଚ୍ଚି ଯିବ ମରୁ ॥ ଏମନ୍ତ ପ୍ରକାର ରାଧା ଭଜନ ମହିମା । ତାରନ୍ତର ଭଜନ୍ତି ଏ ଷଡ଼ ଶିବ ବ୍ରହ୍ମା ॥ ଜ୍ଞବ ପରମ ରୂପରେ ଭଜନ ତାଙ୍କର । ଏ ଜ୍ଞବ ପରମ ସର୍ବହୃଦେ ଅବତାର ॥ ଯେ ରତେ ଭଜଇ ମୂର୍ତ୍ତି ହଏ ତାକୁ ଗତି । ଏହି ଜ୍ଞବ ପରମକୁ ହୃଦେ ଆମ୍ଭେ ସେଇ ॥ ମସ୍ତରେ ଜନମ ହେଉ ବହୁ ନର ଯୋଇ । ଭିନ ଭିନ ନୋହୁ ଆମ୍ଭେ ଜାଣ ଫାଲ୍‌ଗୁଣ ॥ ମୋ ହୃଦରେ ଥାଏ ରାଧା ମୁ ଥାଏଁ ତା ହୃଦେ । ଜ୍ଞବ ପରମରେ ମଚ୍ଛି ରହୁ ଅମ୍ଭାପଦେ ॥ ଏରୂପେ ରାଧାକୁ ମୂର୍ତ୍ତି ଅନୁକ୍ଷଣେ ରମେ । ମୂର୍ତ୍ତି ରମିଲାରୁ ଲୋକେ ତରନ୍ତି ତା ନାମେ ॥ ରାତ୍ରି ପଦ୍ମାଳୟା ଧାତ୍ରି ପରମ ଈଶ୍ୱର । ଏରୂପେ ସେ ରାଧା ନାମ ଅଟେ ଦ୍ୱିଅକ୍ଷର ॥ ରାଧା ଏ ବେଦ ଅକ୍ଷର ପ୍ରତ୍ୟେକରେ ବ୍ରହ୍ମ । ଜାଣି ଶୁଣି ପ୍ରାଣିଏ ତା ହେଉଛନ୍ତି ଭ୍ରମ ॥ ଏ ରାଧା ବେଦ ଅକ୍ଷର ତତ୍ତ୍ୱି ସର୍ବ ମୂଳ । ଉପଦେଶ ଦେବେ ଯାଇ ମନକର୍ଣ୍ଣ ଦେଲ ॥ ରାଧା କୃଷ୍ଣ ନାମ ଗୋଷ୍ଠି ପିଣ୍ଡ ସିନା ମୋର । ସେ ପିଣ୍ଡରେ ଆତ୍ମା ମୂର୍ତ୍ତି ଅଟେ ତତ୍ତ୍ୱସାର ॥ ପିଣ୍ଡକୁ ଭଜନ୍ତି ମୋର ଆତ୍ମା ନ ଭଜନ୍ତି । ଆତ୍ମାକୁ ନ ଭଜି ନରେ ବ୍ୟର୍ଥେ ମରୁଥାନ୍ତି ॥ ଏଣୁଟି ଆମ୍ଭେ ଭକ୍ତଙ୍କୁ କରୁ ପ୍ରକାଶ । ଯେମନ୍ତେ ପ୍ରକାଶ ହେବ ଶୁଣ ବୀର ଈଶ ॥ ଆପଣଅଙ୍ଗ ପ୍ରକାଶି ରହିବ ସେ ଜ୍ଞବ । ଦଶମାସ ରହି ଗର୍ଭେ ଗୌର ବର୍ଣ୍ଣ ହେବ ॥ ଜନ୍ମରୁ ଜନ୍ମି ନାମ ବହିବ ନିମାଇ । ଚୈତନ୍ୟ ରଖିବ ଜ୍ଞବ ପରମରେ ନେଇ ॥ ଚଇତନ୍ୟ ନାମ ଗୋଷ୍ଠି ବହିବ ସେ ତନ ' ମୂର୍ତ୍ତିଟି ଚୈତନ୍ୟ ଦେବ ଜାଣ ଅରଜୁନ । ଚଇତନ୍ୟ ଧର୍ମ ଯିବ ସଂସାରରେ ଥୋଇ । ପ୍ରାଣୀଙ୍କୁ ମୋକ୍ଷ କରିବ ନର ଦେହ ବହି ॥ ଅଚେତ ହୋଇଣ ଥିବେ ଯେଉଁ ଲୋକମାନେ । କହିବେ ସେ ମହାମନ୍ତ୍ର ତାହାଙ୍କର କର୍ଣ୍ଣେ ॥ ତାହାଙ୍କ ଦର୍ଶନେ ପାପୀ ପାଇବେ ନିସ୍ତାର । ତାଙ୍କ ପାରିଷଦଗଣେ ଶୁଣ ବୀରବର ॥ ରୂପସନାତନ ଦୁଇ ଦବେଙ୍କା ମୁକ୍ତାଳ । ଏ ଦୁହେଁ ତାହାଙ୍କ ଖଣ୍ଟିଥିବେ ପ୍ରଭେଦନ ॥ ଗଦାଧର ପଣ୍ଡିତେ ଯେ ତାହାଙ୍କର ଶିଷ୍ୟ । ହେବେ ତାହାଙ୍କ ଶିଷ୍ୟ ହୋଇ ଶ୍ରୀ ନିବାସ । ତାହାଙ୍କର ଶିଷ୍ୟ ହେବ ମଥୁରା ମଙ୍ଗଳ । ଗୋବିନ୍ଦ ପାଦ ହବ୍ ହୋଇ ସେ ନିର୍ମଳ ॥ ଗୋପାଳ ଆଚାର୍ଯ୍ୟ ହେବ ତାଙ୍କ ପରିକର । କୃଷ୍ଣ ବିହାରୀଦ ସେହି ଦେବେ ଅଧିକାର ॥ ତାହାଙ୍କର ଶିଷ୍ୟ ମଧୁମଙ୍ଗଳ ହୋଇବ । ସୁଗନ୍ଧି ଆଚାର୍ଯ୍ୟ ଶିଷ୍ୟ ସେ ସୁଧି କରିବ । ସେହି ଆଚାର୍ଯ୍ୟଙ୍କ ଶିଷ୍ୟ ହେବେ ରସାନନ୍ଦ । ତାହାଙ୍କ ଶିଷ୍ୟ ହୋଇବେ ମୁକ୍ତାମଣି ବିନୋଦ ତାଙ୍କ ଶିଷ୍ୟ ନିତ୍ୟାନନ୍ଦ ସ୍ୱପସ୍ଥଳେ ରହି । ଶିଷ୍ୟ କରିବେ ସେ ବ୍ରଜବାସିଙ୍କି ଯେ ତହିଁ ॥ ଶ୍ୟାମ ଗୋସ୍ୱାମୀକୁ ସେଠାରେ ଶିଷ୍ୟ ସେ କରିବେ । ସେହି ଦିନୁ ଶ୍ୟାମ କୃଷ୍ଣ ଲୋକେ ଯେ ବୋଲିବେ ॥ ତାଳ ମୃଦଙ୍ଗ ବାଇବେ ବୁଲି ପୃଥ୍ୱୀ ଯାକ । ବହୁତ ଶିଷ୍ୟ କରିବେ ନାହିଁ ତାର ଲେଖ ॥ ଏହି ସମ୍ପ୍ରଦାର ଏବେ ଶୁଣ ଧାମ ଶ୍ରେଷ୍ଠ । ପଢ଼ିଲେ ମୋକ୍ଷ ହୋଇବ ଶୁଣିଲେ ପଦସ୍ଥ ॥ ବ୍ରହ୍ମ ଶାସ୍ତ୍ର ଦ୍ୟନ୍ତେ ଚଇତନ୍ୟ ଧର୍ମ କହି । ବୈଷ୍ଣୁ ସେହି ନିମାନନ୍ଦ ଅଟେ ବ୍ରହ୍ମଧ୍ୟାୟୀ । ପ୍ରଥମେ ଅସନ ଶୁଦ୍ଧି ଅଟେ ମନ

ଶୂନ୍ୟ । ଓଁ ଭାରତୀ ଆଦି ମୂଳ ମହାମନ୍ତ୍ର ଧ୍ୟାନ । ପରମହଂସ ଅଟଇ ଏ ସମ୍ପ୍ରଦା ଦୀକ୍ଷା । ନାସିକା ଅଗ୍ରକୁ ହରି ମନ୍ଦିର ଯେ ଶିଖା ॥ ଧର୍ମଶାଳା ତାହାର ଯେ ମଥୁରା ନଗର । କୈଳାସ ଶ୍ରୀ ବୃନ୍ଦାବନ ହରିନାମ ମାଳ ॥ ଗୋକୁଳ ତା କ୍ଷେତ୍ର ତୀର୍ଥ ନାମ ଯେ ଗୋମତୀ । ଗୋବର୍ଦ୍ଧନ ପରିକ୍ରମା ଗୋପାଳ ଗାୟତ୍ରୀ ॥ ଦ୍ଵାରକା ତାହାର ଧାମ କୃଷ୍ଣ ଉପାସକ । ରୁକ୍ମିଣୀ ମାତା ତା ଇଷ୍ଟ ବ୍ରହ୍ମରେ ରସିକ ॥ ବେଦ ତାର ଯଜୁ ବଟ ନାମ ଯେ କଦମ୍ବ । ଋଷି ତାର ଦ୍ଵାରକନ୍ତ ଗରୁଡ଼ ଯେ ସ୍ତମ୍ଭ ॥ ନାରଦ ଆଗ୍ରେୟ ଗୋତ୍ର ଅଚ୍ୟୁତ ତାହାର ॥ ଭଜନ ଗୋପାଳମନ୍ତ୍ର ଦ୍ଵାଦଶ ଅକ୍ଷର ॥ ଗୋପୀ ଷଷ୍ଠାଇଣ ଗୋପୀ ତିଳକ ଚନ୍ଦନ । ମୁଦ୍ଗର ବଂଶୀରେ ଭକ୍ତ ଲଗାନ୍ତି ଭଜନ ॥ ଦୁର୍ବାସା ନାମରେ ଋଷି ମଠ ବଡ଼କୁଣ୍ଡ । ଆଦିମାତା କମଳା ଯେ ଗାର୍ଗ୍ୟ ମୁନି ଶ୍ରେଷ୍ଠ ॥ ଶ୍ୟାମକୁଣ୍ଡ ରାଧାକୁଣ୍ଡ ଅଟନ୍ତି ଏ ସ୍ଵର୍ଗ । ନବଧା ଭକତି ପୂଜା ଅଷ୍ଟାଙ୍ଗ ଯେ ଯୋଗ ॥ ସାରୂପ୍ୟ ମୁକତି କହ୍ନ ରସ ପ୍ରେମ ଜାଣ । ଅଷ୍ଟ ସଖୀଙ୍କର ନାମ କହୁଅଛୁ ଶୁଣ ॥ ଇନ୍ଦୁରେଖା ଚିତ୍ରରେଖା ଚମ୍ପକ ଲତିକା । ରଙ୍ଗଦେବୀ ସୁଦେବୀ ଯେ ଲଳିତା ବିଶାଖା ॥ ଶ୍ରୀରୂପମଞ୍ଜରୀ ସେଇ ଅଷ୍ଟସଖୀ ଜାଣ । ଶୁଣିଥାନ୍ତି ପ୍ରତିଦିନ ତାହାଙ୍କ ପାଶେଣ ଦାମ ସୁଦାମ ସୁବଳ ଯେ ମଧୁମଙ୍ଗଳ । ଅନଙ୍ଗ ମଞ୍ଜରୀ କାମମଞ୍ଜରୀ ଯୁଗଳ ॥ ଗୋବର୍ଦ୍ଧନ ପରିକ୍ରମା ନିର୍ମାଲ୍ୟ ଯେ ଭୋଗ । ଅଷ୍ଟପ୍ରହରେ ଶ୍ରୀକୃଷ୍ଣ ଅଷ୍ଟଲୀଳା ଯୋଗ ॥ ଗୋବିନ୍ଦ ଶ୍ରୀମୁଖେ ଶୁଣି କରନ୍ତି ଏ ଗୀତ । ଏ ସମ୍ପ୍ରଦାର ମହିମା ଅଟେ ବହୁତ ॥ ଏହି ସମ୍ପ୍ରଦାର ପୁଣ୍ୟ ନାମଧାମ ଆଦି । ସକଳ ବୁଝାଇ ତୋତେ କହିଲି ସମ୍ପାଦି ॥ ପଣ୍ଡି ଭଜନେ ମୋହର ନ ଯୋଗାଇ ଦୋଷ । ମୁହିଁ ସର୍ବଦା ଅଟଇ ଶ୍ରୀକୃଷ୍ଣର ଦାସ ॥

ଇତି ଶ୍ରୀ ନାମଭକ୍ତି ଗୀତାସ୍ଵାଂ ଶ୍ରୀ ହରି ଅର୍ଜୁନ ସମ୍ବାଦେ ମହା
ସମ୍ପ୍ରଦା ନାମ ଧାମାଦି କଥନଂ ନାମ ଷଷ୍ଠଷଷ୍ଠିତମୋଽଧ୍ୟାୟଃ ।

---

## ସପ୍ତଷଷ୍ଠି ଅଧ୍ୟାୟ ।

ଅର୍ଜୁନ ବୋଇଲେ ଅହେ ପ୍ରଭୁ ବାସୁଦେବ । ଶ୍ୟାମାନନ୍ଦଦୀକ୍ଷା ମୋତେ ବିସ୍ତାରି କହିବ ॥ କହନ୍ତି ଯେ ନାରାୟଣ ଶ୍ୟାମାନନ୍ଦୀ ପନ୍ଥା । କୁନ୍ତୀ ନନ୍ଦନ ଅର୍ଜୁନ କହିଲେ ଯେ ଶ୍ରୋତା ॥ ବୋଲନ୍ତି ହେ ସାବଧାନେ ଶୁଣ ପାଣ୍ଡୁ ବୀର । ବ୍ରାହ୍ମଣ ଅଂଶେ ଜନ୍ମିବ ଶ୍ୟାମାନନ୍ଦ ମୋର ॥ ଏଣୁ ବ୍ରାହ୍ମଣ ଅଟଇ ସର୍ବବର୍ଣ୍ଣେ ଗୁରୁ । ବ୍ରାହ୍ମଣ ତାରନ୍ତି ପ୍ରାଣୀମାନଙ୍କୁ ଏସାରୁ ॥ ବ୍ରାହ୍ମଣଠାରେ ଦୋରେଲା ଯେ ପ୍ରାଣୀ ହୁଅଇ । ବିଷ୍ଣୁ ଦୋରେଲା ସେ ଜାଣ ପ୍ରତ୍ୟକ୍ଷେ ଅଟଇ ॥ ବ୍ରାହ୍ମଣ ନାମ ହେ ପାର୍ଥ ଯେଉଁ ତ୍ରି ଅକ୍ଷର । ପ୍ରତ୍ୟକ୍ଷେ ଅଟନ୍ତି ବ୍ରହ୍ମା ବିଷ୍ଣୁ ମହେଶ୍ଵର ॥ ଏଣୁ ବିପ୍ର ପାଦରଜ ଘେନଇ ଯେ ଭକ୍ତ । ସକଳ ଦୁଃଖ ତାହାର ହୋଇଯାଏ ଶାନ୍ତ ॥ ବ୍ରାହ୍ମଣମାନଙ୍କୁ ଯେହୁ ଭକ୍ତ୍ୟେ ଦିଏ ଗାଈ । ତାହା କୁଳପାଳେ ବିଷ୍ଣୁ ପରଲୋକ ଅବଶ୍ୟ ॥ ବ୍ରାହ୍ମଣଙ୍କ ବାକ୍ୟ

ହରି ଭକ୍ତ୍ୟ ଥାନ୍ତି ରତ୍ନ । ସେ ଯାହା ବୋଲଇ ମୁଁ ତା ଆନ ନ କରଇ ॥ ବ୍ରାହ୍ମଣ ସନ୍ତୋଷ ହେଲେ ମୁଁ ହୁଏ ସନ୍ତୋଷ । ବ୍ରାହ୍ମଣଙ୍କୁ ଯେ ନିନ୍ଦଇ ତାର ସର୍ବନାଶ ॥ କୃଷ୍ଣର ନାମକୁ ଲକ୍ଷେ ଜପି ଫଳ ଯେତେ । ବ୍ରାହ୍ମଣ ଭକ୍ତ୍ୟ ସେବିଲେ ଫଳ ହୁଏ ତେତେ ॥ କୋଟି ଶିବଲିଙ୍ଗ ପୂଜା କଲେ ଯେତେ ପୁଣ୍ୟ । ତେତିକ ପୁଣ୍ୟ ହୁଅଇ ସେବିଲେ ବ୍ରାହ୍ମଣ ॥ ସହସ୍ରେକ ଶାଳଗ୍ରାମ ପୂଜିଲେ ଯେ ଫଳ । ସହସ୍ରଗୁଣେ ଅଧିକ ବିପ୍ର ପାଦଜଳ ॥ ବ୍ରାହ୍ମଣ ଯାହା ଭୁଞ୍ଜଇ କୃଷ୍ଣ ତା ଭୁଞ୍ଜନ୍ତି । ଏଣୁ ବ୍ରାହ୍ମଣ କୃଷ୍ଣଙ୍କ ପ୍ରାଣଟି ଅଟନ୍ତି ॥ ବ୍ରାହ୍ମଣ ଯହିଁ ରହଇ ସେସ୍ଥାନ ପବିତ୍ର । ସର୍ବ ତୀର୍ଥକୁ ପବିତ୍ର କରେ ବିପ୍ର ହସ୍ତ ॥ ବ୍ରାହ୍ମଣ ବାକ୍ୟ ସକଳ କୃଷ୍ଣ ହିଁ କେବଳ । ଏଣୁ ସମାନ ଅଟନ୍ତି ବ୍ରାହ୍ମଣ ଅନଳ ॥ ହୋମସ୍ଥାନରେ ଯେ କରେ ବ୍ରାହ୍ମଣ ବରଣ । ତାହାର ସୁଫଳ ହୁଏ ସର୍ବ-କର୍ମ ଜାଣ ॥ ହୋମଯଜ୍ଞରେ ଯେତେକ ଘୃତ ଥିବ ବାଢ଼ି । ତହୁଁ ଉତ୍ତମ ବ୍ରାହ୍ମଣ ନେଲେ ବେଦ ପଢ଼ି ॥ ବ୍ରାହ୍ମଣ ଭୁଞ୍ଜିଲେ ଅଗ୍ନି ହୁଅନ୍ତି ସନ୍ତୋଷ । ଏଣୁ ବ୍ରାହ୍ମଣ ଅଟଇ ଅଗ୍ନିର ଏକାଂଶ ॥ ବ୍ରାହ୍ମଣ ଜଠରଅଗ୍ନି ଅଗ୍ନିର ସମାନ । ଏଣୁ ଘୃତର ଉତ୍ତମ ଭୁଅନ୍ତି ବ୍ରାହ୍ମଣ ॥ ବ୍ରାହ୍ମଣେଟି ଆଶୀର୍ବାଦ କରନ୍ତି ଯେମୁଖେ । ଶ୍ରୀ କୃଷ୍ଣ ବଚନ ତାହା ଜାଣିବ ପ୍ରତ୍ୟକ୍ଷେ ॥ ବ୍ରାହ୍ମଣର ଗର୍ବ ଯାକ କୃଷ୍ଣ ଗର୍ବ ଅଟେ । ବ୍ରାହ୍ମଣେ ଦାନ ଘେନନ୍ତେ ଲଭଇ ବୈକୁଣ୍ଠେ ॥ କେହି ନ କରନ୍ତୁ ଏଣୁ ବ୍ରାହ୍ମଣେ ଅଶ୍ରଦ୍ଧା । ବ୍ରାହ୍ମ-ଣେଟି କୃଷ୍ଣ ଅଙ୍ଗ ଅଟନ୍ତି ସର୍ବଦା ॥ ବ୍ରାହ୍ମଣ ସେବା ମୋହର ଉତ୍ତମ ଭକତି । ଶ୍ୟାମାନନ୍ଦ ବିପ୍ରଘରେ ହେବେ ଉତପତ୍ତି ॥ ବୁଦ୍ଧଧର୍ମରେ ହୋଇବେ ସେହୁ ଅଧି-କାରୀ । ନାମମହା ମନ୍ତ୍ର ଦେବେ ଲୋକଙ୍କୁ ଉଦ୍ଧାର ॥ ସାକ୍ଷାତରେ କୃଷ୍ଣକଳା ସେହି ଜାତ ହେବେ । ବୁଦ୍ଧଧର୍ମ ସେକ ପ୍ରାଣିଗଣେ ଦୀକ୍ଷା ଦେବେ ॥ କୃଷ୍ଣ ସ୍ୱାମିଙ୍କି କରିବେ ସେହୁ ପରିକର । ତେଣୁ ନାମ ହେବ ସ୍ୱାମୀ କୃଷ୍ଣ ସମ୍ପ୍ରଦାର ॥ ସହଜାନନ୍ଦ ଯେ ହେବେ କୃଷ୍ଣ ସ୍ୱାମିଶିଷ୍ୟ । ଅଗ୍ରଣୀ ପଦ୍ମନାଭ ଯେ ହେବେ ତାଙ୍କ ଶିଷ୍ୟ ॥ ସେ ପଦ୍ମନାଭଙ୍କ ଶିଷ୍ୟ ଗୋକୁଳ ପଣ୍ଡିତ । ଗୋକୁଳ ପଣ୍ଡିତ ଶିଷ୍ୟ ହେବେ ଯଶୋ-ବନ୍ତ ॥ ସେ ଯଶୋବନ୍ତଙ୍କ ଶିଷ୍ୟ ମୁଞ୍ଜମଣି ବଲ୍ଲଭ । ତାହାଙ୍କର ଶିଷ୍ୟ ହେବେ ସଦା-ନନ୍ଦ ଯତି ॥ ଲକ୍ଷଣାଗଜ ହୋଇବେ ତାହାଙ୍କର ଶିଷ୍ୟ । ଲକ୍ଷ୍ମୀସାଗର ବୈଷ୍ଣବ ହେବେ ତାଙ୍କ ଶିଷ୍ୟ ॥ କହିଲେ ଯେ ନ ସରିବ ତାଙ୍କ ଶିଷ୍ୟ ଯେତେ । ଗୋଟିଏ ମାତ୍ର ତହିଁରୁ କହିଦେବା ତୋତେ ॥ ସେ ସାଧୁ ମଠରୁ ଜାଣ ବାହାରନ୍ତି ଯେବେ । ଅନୁକୂଳର ନିଶାଣ ବାଜା ଉଠେ ଶୁଭେ ॥ ଯହିଁକି ଗଲେ ନିଶାଣ ବଜାଇ ସେଯାନ୍ତି । ଏମନ୍ତେ କ୍ଷେତ୍ର ମଧ୍ୟରେ ଥିଲେ ସେହି ଯତି ॥ ନିଶାଣ ବଜାଇ ବଡଦାଣ୍ଡେ ଯାଉନ୍ତେ ପତି । ଶୁଣି ଚମକି ପଡ଼ିଲେ ସର୍ବ ପୁରବାସୀ ॥ ତାହାଙ୍କ ସଙ୍ଗତେ ଶୁଣି ଗଜପତି ରାଜା । ବୋଲିବେ କାହିଁ ଅଇଲା ଏ ଅପୂର୍ବ ବାଜା ॥ କେତେ ବୋଇଲେ ମହିମା ବଇଷ୍ଣବ ଜଣେ । ନିଶାଣ ବଜାଇ ଯାନ୍ତି ସାହି ବଡଦାଣ୍ଡେ ॥ ରାଜା ବୋଇବେ ଏ ବାଜା ଦେଲା କେ ତାହାକୁ । ଏ ବାଦ୍ୟ ଶୋଭା ପାଇବ ଅମ୍ଭ ରାଜଣଙ୍କୁ ॥ ନୃପତି-

ଭୂଲନ୍ତୁ ଯିନା ଏ ବାଦ୍ୟ ଘୋଷଇ । ସେ ତାହିଁକି ବଜାନ୍ତି ତା ଭୁଞ୍ଜିଅଛ ଯାଇ ॥ ସ୍ୱଜାର ଆଜ୍ଞା ପାଇଣ ଧାଇ ଯିବେ ଲୋକେ । ମିଳିବେ ଯାଇ ସେ ସାଧୁ ମହନ୍ତର ପାଖେ ॥ ବୋଲିବେ ଅହେ ଗୋସାଇଁ ଉଷ ଏ ବାଜଣା । ଶ୍ରୀମହାରାଜାଏ କରୁ ଅଛନ୍ତି ବୋଲଣା ॥ ସେ ବଇଷ୍ଣବ ବୋଲିବେ ଶୁଣ ଅରେ ଦୂତେ । ଯେବେ ବଜାଇବା ପାଇଁ ମନାକଲ ମୋତେ ॥ ନବାଜୁ ନବାଜୁ ଅଛୁ ତାହାର ଇଷାଣି । ଲୋକେ ଧାଇଁ ଯିବେ ପୁଣି ଏ ବଚନ ଶୁଣି ॥ ଶ୍ରୀଛାମୁରେ ଜଣାଇବେ ମହନ୍ତଙ୍କ ଭାଷ । ଶୁଣି ଗଜପତି ରାଜା ହୋଇବେ ହରଷ ॥ ବୋଲିବେ ଦେଖି ଆମ୍ଭର ବଜାରେ ଇଷାଣି । ଶୁଣିଣ ଛାମୁର ଲୋକେ ବଜାଇବେ ଅଣି ॥ ପିଟିବେ ଯେତେ ରୂପରେ ନ ଶୁଭଇ ନାଦ । ତାହା ଦେଖି ସର୍ବ ଲୋକେ ହୋଇବେ ସ୍ତବଧ ॥ ଆଶ୍ଚର୍ଯ୍ୟ ଦେଖିଣ ରାଜା ସାଧୁପାଖେ ଯିବେ । ବହୁତ କାର୍ପଣ୍ୟହୋଇ ଦଣ୍ଡବତ ହେବେ ॥ ବୋଲିବେ ତାହିଁକି ଏହୁ ଇଷାଣ ନ ବାଜେ । ଗୋସାଇଁ ବୋଲିବେ ତୁମ୍ଭ ଆଜ୍ଞା ମହାରାଜେ ॥ ଅପଣ ନାହିଁ କଲଟୁ ନ ବାଜଇ ଜାଣ । ଗୁରୁ ଆଜ୍ଞା ସ୍ୱଜା ଆଜ୍ଞା ସାଧୁଆଜ୍ଞା ପୁଣ ॥ ଏତଇ ଆଜ୍ଞା ସଂସାରେ ସର୍ବ ଲୋକେ ମାନ୍ତି । ଗଜପତିଙ୍କର ବାକ୍ୟ କେ ମେଣ୍ଟନ୍ତି ପୁଣି ॥ ଅମ୍ଭ ବାଜା ଅହେ ରାଜା ନ ବାଜଇ ଯହିଁ । ରାଜ୍ୟର ସକଳ ବାଜା ବାଜନ୍ତି ବା ନାହିଁ ॥ ଶୁଣି ଗଜପତି ରାଜା ହେବେ ହସ ହସ । ବୋଲିବେ ଅଜ୍ଞା-କରନ୍ତୁ ବାଜୁ ବାଦ୍ୟଘୋଷ ॥ ମହନ୍ତ ସାଧୁ ବୋଲିବେ ବାଜୁ ବାଜୁ ବାଦ୍ୟ । ତକ୍ଷଣେ ବାଦ୍ୟ ବାଜିବ କରି ଘୋର ନାଦ ॥ ସାଧୁମାନଙ୍କର ବାକ୍ୟ ଏହିପରି ଦୃଢ଼ । ସାଧୁଙ୍କ ମହିମା ବୁଝି ନ ପାରନ୍ତି ମୂଢ଼ ॥ ଅହେ ପାର୍ଥ ଏ ଧର୍ମର ଏତେ ବଡ଼ ଅସ୍ତ । ତାହାଙ୍କ ପର ହୋଇବେ ନାରାୟଣ ଦାସ ॥ ସେହି ନାରାୟଣ ଦାସ ମଥୁରା ମଣ୍ଡଳେ । ଏହିଣ ଶିଷ୍ୟ କରିବେ ମୋହନ ଗୋପାଳେ ॥ ତାହାଙ୍କ ଶିଷ୍ୟ ହୋଇବେ ଶ୍ରୀମନ୍ତ ମହନ୍ତେ । ଶ୍ରୀମନ୍ତ ମହନ୍ତଶିଷ୍ୟ ଗୌତମ ପଣ୍ଡିତେ ॥ ଗଉତମ ପଣ୍ଡିତଙ୍କ ଶିଷ୍ୟ ଜୟଦେବେ । ଯେଗୀତଗୋବିନ୍ଦ ରସ ପ୍ରକାଶିବେ ଭବେ ॥ ଏହିରୂପେ ଧ୍ୟାନାନନ୍ଦ ସମ୍ପ୍ରଦାୟ ପୀଢ଼ି । କହିଲେ ଯେ ନ ସରଇ ଶ୍ରୀବିଷ୍ଣୁର ଗୋଡ଼ ॥ ଶ୍ରୀବିଷ୍ଣୁର ପାଦ ସେବା କରନ୍ତି ଏମାନେ । ଶ୍ରୀମହାଲକ୍ଷ୍ମୀଙ୍କ ଛଡ଼ା ନ ଭଜନ୍ତି ଆନେ ॥ ଏବେ ଧାମ କ୍ଷେତ୍ର ଏହି ସମ୍ପ୍ରଦାୟ ଗୁଣ । କ୍ଷୀରଶାୟୀ ଧର୍ମଶାଳା ବଇକୁଣ୍ଠ ଧାମ ॥ ଦ୍ୱାରକା ତା ଗୋଲହାଟ ଗୋଲୋକ ଯେ କ୍ଷେତ୍ର । ଧାରଣା ଯେ ପୂର୍ଣ୍ଣବ୍ରହ୍ମ ଓଁ ଯେ ମୂଳମନ୍ତ୍ର ॥ ସାଯୁଜ୍ୟ ମୁକ୍ତିଟି କହି ସଙ୍ଗବେଣୀ ନାମ । ଆଚାର୍ଯ୍ୟ ନାରଦମୁନି ଋଷି ଗଉତମ ॥ ଗୋତ୍ର ସୂର୍ଯ୍ୟାମୃତ ତାର ଅଥର୍ବ ଯେ ବେଦ । ଅଧ୍ୟାତ୍ମ ଜ୍ୟୋତି କରନ୍ତି ବ୍ରହ୍ମ ପ୍ରାଣଛନ୍ଦ ॥ ବ୍ରହ୍ମସୂତ୍ର ବଇଦାଣ୍ଡ ଅମ୍ବା ଯେ ବଜାର । ପରମହଂସ ଯେ ଧର୍ମ ବ୍ରହ୍ମ ଧ୍ୟାନ ତାର ॥ ତତ୍ତ୍ୱ ତତ୍ତ୍ୱତ ଷିକୂଟ ବୋଲିଇ ଯେଉଁଠାରେ । ହନୁ ଘଉ ଚାହିଁ ହନୁ ଯେନ ସେହି-ଠାରେ ॥ ଶ୍ରୀପରମହଂସ ଜ୍ୟୋତି ବାସ୍ଥାକଲ୍ପବଟ । କମଳା ଅଦମାତାର ମଠ ବଇକୁଣ୍ଠ ॥ ଧନୁଆସନ ବାସୁକୀ ନେତ୍ର ପଦୁଗାଣ୍ଟ । ଶୁଭ୍ରାମ୍ବର ବସ୍ତ୍ର କଲ ଛଇଂତୁଳୀ ଯେତ ॥

ସେବା ସବନ ଅଲକ୍ଷ ରସ କୁମ୍ଭିରସ । ଅଷ୍ଟସଖୀଙ୍କର ନାମ ଶୁଣ ଗୁଡାକେଶ ॥ ପଦ୍ମାକ୍ଷୀ ପାବନୀ ପଦ୍ମନେତ୍ରୀ ପରିମଳା । ପଦ୍ମମୁଖୀ ପଦ୍ମଚୋଳା ପିଙ୍ଗଳା ପିଚ୍ଛୁଳା ॥ ଏହି ଧର୍ମ ଷଚ୍ଛା ଧର୍ମ ପଦ୍ମରେ ଅଛଇ । ଯାବନ୍ତ ଶରୀର ପଦ୍ମକୋଷୁ ପ୍ରବର୍ତ୍ତଇ ॥ ବୁଝିଲେ ସମ୍ପ୍ରଦା ଯାକ ସବୁ ପଦ୍ମ ଏକ । ଏହି ମୂଳ ସମ୍ପ୍ରଦା ନ ଜାଣେ କେହି ଲୋକ ॥ ମୋତେ ହେଲେ ଦଶେ ଅମ୍ବା ପଦ୍ମରୁ ପ୍ରକାଶ । ମାତାର ଜଠରେ ରହି ଅଛେ ଦଶମାସ ॥ ଶରୀରରୁ ଜାତହୋଇ ଶରୀରେ ସଞ୍ଚରେ । ବୁଝିଲେ ସବୁରି ଅମ୍ବା ଏକ ସୂତ୍ରେ ଧରେ ॥ କେହି ଅବା ଭାଗ୍ୟବନ୍ତ ସୁଖ ଭୋଗ ଭୁଞ୍ଜେ । ସକଳ ଜୀବ ପ୍ରକାଶପାନ୍ତି ନାଭିକଞ୍ଜେ ॥ ଏଣୁ ସବୁ ଲୋକଙ୍କର ମୂଳ ପଦ୍ମରତା । ଊର୍ମିଲ୍ୟ ଭୋଜନ କର ସଙ୍ଗେ ବସି ଏକା ॥ ଆଧାର ଲିଙ୍ଗ ଯେ ନାଭି ହୃଦ କଣ୍ଠ ଯାଏ । ଲଲାଟ ଉପରୁ ଭେଦ ଭଳ ପଦ୍ମଯାଏ ॥ ଏମନ୍ତ ମହିମା ଏହି ସମ୍ପ୍ରଦାର ଧର୍ମ । ପ୍ରଥମରୁ ଶିଷ୍ୟ ପନ୍ଥା ହେଲେ କୃଷ୍ଣ ଶ୍ୟାମ ॥ ତେଣୁ ଏହି ସମ୍ପ୍ରଦାକୁ କୃଷ୍ଣ ଶ୍ୟାମ କହି । ଏରୂପେ ବୋଲନ୍ତି ଗୁରୁପର ଗୁରୁଭାଇ ॥ ଶିବାନନ୍ଦ ମାଧବାନନ୍ଦ ରାମାନନ୍ଦୀ । ଶ୍ୟାମାନନ୍ଦୀର ଯେଉଁଣ ଗୁରୁଧର୍ମ ବନ୍ଧ ॥ ଏହି ଗୁରୁ ଧର୍ମପରେ ଆଉ ଯେତେ ଦୀକ୍ଷା । ସମ୍ପ୍ରଦାରେ ନ ପଶି ଏ ସେବାକର ଶିକ୍ଷା ॥ ଆଉ ଯେତେ ଭଳକ ଏ ଗୁରୁ ଧର୍ମ ଭଳ । ନ ବୁଝିଲା ଲୋକେ ମିଛେ ଲଗାନ୍ତି ଯେ ଗୋଳ ॥ ସମ୍ପ୍ରଦା ନ ଛାଡି ସୁଧି ନ ଛାଡି ଭଲକେ । ଅମୃଧର୍ମ ମୂଳ ବୋଲି ବୋଲୁଥାନ୍ତି ଥୋକେ ॥ ଷଟ୍କରମାଳା ଦଣ୍ଡ ବସିବେ ହରଣେ । ସମ୍ପ୍ରଦାତତ୍ତ୍ୱ ବୁଝିବା କଥା ଥାଉ ତେଣେ ॥ ଯହୁଁ ବସ୍ତ୍ରହରଣ ଭଳ-କରୁ ଭାଣ୍ଡି । ଛଦ୍ମରେ ବୈଷ୍ଣବ ହୋଇ ସଂସାରକୁ ନଷ୍ଟ ॥ ସମ୍ପ୍ରଦାଧର୍ମକୁ ନିନ୍ଦା କଲେ ଯେତେ ପାପ । ତାହା ଆମ୍ଭେ ତୋ ଆଗରେ କହୁଅଛୁ ସ୍ୱରୂପ ॥ ଜାଇଥିଲେ କଷ୍ଟ ମଲେ ପଡ଼ନ୍ତି ନରକେ । ଆଉ ଯେତେ ଦୋଷ ତହୁଁ କହୁଅଛୁ ଥୋକେ ॥ ଶିବ ଦର୍ଶନ ନ କରି ଭୁଞ୍ଜନ୍ତି ଯେ ଅନ୍ନ । ଶିଷ୍ୟ ଅନୁକ୍ରମେ ଯେହୁ ନ ଦଅନ୍ତି ଦାନ ॥ ନିଜଶକ୍ତି ଅନୁସାରେ ନ ବଞ୍ଚେ ଯେ କାଳ । ଜୀବପୋଷି ନାଶକରେ ଯେବଣି ଗୃଣ୍ଡାଳ ॥ ଧନଲୋଭେ ସ୍ତ୍ରୀଶିକ୍ଷ ଯେ ଯରେ କରେ ଦାନ । ଭଳ ଧର୍ମ କର୍ମ ଦନ୍ତ ଭବ ତହୁଁ ଧନ । ଦୁଃଖ ଦେଖିଣ ପ୍ରାଣୀଙ୍କ ନ କରେ ଯେ ଦୟା । ବିଶ୍ୱାସ ଦେଖାଇ ଜନେ କରେ ଯେହୁ ମାୟା ॥ ବ୍ରାହ୍ମଣଙ୍କ ପ୍ରଭିଆଶା ଭାଙ୍ଗନ୍ତି ଯେ ପ୍ରାଣୀ । ସାଧୁଙ୍କୁ ନିନ୍ଦା କରି ଯେ କହେ କଟୁ ବାଣୀ ॥ ଗୁରୁଙ୍କୁ ନ ମାନି ଯେ ଦକ୍ଷିଣା ନ ଦଅନ୍ତି । ପରର ପଦାର୍ଥ ଯେହୁ ଚୋରି କରି ନିଅନ୍ତି ॥ ମାଇତା ସ୍ତ୍ରୀଙ୍କି ଯେହୁ କରେ ପରି-ହାସ । ଶାସ୍ତ୍ର ଶୁଣି ବଳତାକୁ କହେ ଯେ ଭୁଲାଷ ॥ ଦାନବୃତ୍ତିମାନ ହରି ନିଅନ୍ତି ଯେ ଜନ । ଭାଙ୍ଗଇ ଯେ ପର ଧର୍ମ କହେ କୁବଚନ ॥ ସୂର୍ଯ୍ୟଉଦେ ଅସ୍ତରେ ଯେ ବେଳଥର ଭୁଞ୍ଜେ । ପହିଲି କଥାରେ ଯେହୁ ପିତା ମାତା ଗଞ୍ଜେ ॥ ଆପଣା ସ୍ତ୍ରୀ-ଥାଉଁ ଯେ ରମେ ପରସ୍ତ୍ରୀ । ବ୍ରାହ୍ମଣ ହୋଇଣ ଯେବେ ଅକର୍ମ ଆଚରି ॥ ବିଧବା ବ୍ରାହ୍ମଣୀ ଯେହୁ ହରଣ କରଇ । ମାତୃହରଣ ଦୋଷକୁ ସେ ପାପୀ ଲଭଇ ॥ ବ୍ରାହ୍ମଣଙ୍କ

ସଙ୍ଗେ ଯେତୁ ବସେ ଶତବନ । ଅତିଥି ଯା ଘରୁ ଯାନ୍ତି ଉପାସ ହୋଇଣ ॥ ବିଶ୍ୱାସିଜନଠାରେ ଯେ ଅବିଶ୍ୱାସୀ ହୋଇ । ଆତ୍ମଘାତକୀ ହୋଇଣ ଯେ ପ୍ରାଣୀ ମରଇ ॥ ବ୍ରାହ୍ମଣ ହୋଇ ଯଦ୍ୟପି ହରଇ ଶୂଦ୍ରାଣୀ । ନ ପାବନ୍ତି ପିତୃଲୋକେ ତାହା ହସ୍ତେ ପାଣି ॥ ଦୋଷକୁ ଅର୍ଜି ସାହସେ ଉଦ୍ୟମ ଯେ କରେ । ତାହାର ହୃଦରେ ମହା ବ୍ୟାଧି ଜାଣ ଧରେ ॥ ବେଶ୍ୟା ସଙ୍ଗତେ ପୀରତି କରଇ ଯେ ଜନ । ରଜୋବତୀ ନାରୀକି ଯେ କରଇ ହରଣ ॥ ବଡ଼ଶୀ ପକାଇ ଜଳୁ ମୀନ ଯେ ମାରନ୍ତି । କୁଣ୍ଡାଇ ବସାଇ ଯେତୁ କୃଷ୍ଟେ ବିଷଦ୍ୟନ୍ତି ॥ ସ୍ୱର୍ଣ୍ଣ ଜାଲରେ କଣ୍ଟକ ପକାନ୍ତି ଯେ ବାଟେ । ମଳମୂତ୍ରକୁ ତେଜନ୍ତି ଯେ ଗାଧୁଆ ତୁଠେ ॥ ଶରଣ ପଶିଲେ ତାକୁ ଯେ ନ କରେ ରକ୍ଷା । ପଞ୍ଚାଶବନ ଦେଖି ଯେ ନ ପିଅନ୍ତି ବସ୍ତା ॥ ଶ୍ରେଷ୍ଠଜାତି ହୋଇ ଯେତୁ କରେ ସୁରାପାନ । ମୃତ୍ତିକା ନ ଘେନି କରେ ଶଉଚ ବିଧାନ ॥ କଉଡ଼ି ନେଇ ଯେ ମାରିବ ଏ କମ କଇ । ଅଲିଦ୍ୱାରେ ନ ରହେ ଯେ ବ୍ରତନିଷ୍ଠା ଧରି ॥ ଶ୍ରୀଗୁରୁ ଗୋସାଇଁଠାରେ କରେ ଯେତୁ କ୍ରୋଧ । ପୁତ୍ର ଯେବେ ଥାଇଁଣ ନ କରେ ପିତୃ ଶ୍ରାଦ୍ଧ ॥ ସୁବେଦୀ ବ୍ରାହ୍ମଣଙ୍କୁ ଯେ କରେ ଅପମାନ । ବୈଷ୍ଣବ ସାଧୁଙ୍କ ଦ୍ରବ୍ୟ ଯେ କରେ ହରଣ ॥ ଗୁରୁସ୍ତ୍ରୀର ବଉନକୁ ଲଗେ ଯେଉଁ ନାରୀ । ଗୁରୁ ଗୋବିନ୍ଦର ନାମ ମୁଖେ ନ ଉଚ୍ଚାର ॥ ବିଷ୍ଣୁ ପୁରାଣ ଶ୍ରବଣେ ଯେ ବିଘ୍ନ ମଣନ୍ତି । ତୁଳସୀ ବୃକ୍ଷକୁ ଯେତୁ ସ୍ନେହେ ନ ସ୍ଥାପନ୍ତି ॥ ବାଳକ ଦେହରୁ ଯେତୁ କାଢ଼ିନିଏ ଧନ । ଗୁରୁଠାରେ ଦ୍ରୋହ କରେ ଯେବଣ ଦୁର୍ଜନ । ବିଭା ହୋଇ କନ୍ୟାକୁ ଯେ ଛଡ଼େ ଅଦୋଷରେ । ଅନପିତେ ଖାଇ ଯେତୁ କହେ ସ୍ୱଜନ୍ମାରେ ॥ ବିଷ୍ଣୁ ଭକ୍ତ ଜନଙ୍କୁ ଯେ ଅଦୋଷରେ ଦଣ୍ଡେ । ହରିନାମ ବେଳେ ଯେତୁ ନ ବୋଲଇ ତୁଣ୍ଡେ । ଉଚିତ ହେବା ଅଂଶରେ ଯେ ଛଡ଼ଇ ଭଜ ଜାତି । ଯେ ପ୍ରାଣୀ ଦାନ ଘେନିଣ ସର୍ବଦା ବାଞ୍ଛନ୍ତି ॥ ଏତେକ ପାତକ ଲଭେ ଜାଣ ଯେତୁ ଜନ । ଯେ ସର୍ବଦା ନିନ୍ଦା କରେ ଅହେ ଅରଜୁନ ॥ କହିଲିଁ ତୋ ଆଗେ ଆମ୍ଭେ ସକଳ ବିସ୍ତାର । ଦୀନକୃଷ୍ଣ ପ୍ରଭୁଙ୍କର ପାଦ ସେବାକାରୀ ॥

ଇତି ଶ୍ରୀ ନାମରତ୍ନଗୀତାୟାଂ ଶ୍ରୀହରିଅର୍ଜୁନସମ୍ବାଦେ ସର୍ବଦା
ନିନ୍ଦାଫଳନିର୍ଣ୍ଣୟୋ ନାମ ସପ୍ତଷଷ୍ଠିତମୋଽଧ୍ୟାୟଃ ।

---

## ଅଷ୍ଟଷଷ୍ଠି ଅଧ୍ୟାୟ ।

ଅର୍ଜୁନ କହିଲେ ଅହେ ଦେବ ଚକ୍ରଧର । ପାଦ ଗୋଟିଏ ବିପ୍ରଙ୍କେ ଛାତିରେ ତୁମ୍ଭର ॥ ଏହା ଦେଖି ମୋ ମନରେ ହୋଇଛି ସନ୍ଦେହ । ସେ ଚିହ୍ନ ଧରିଛ ତୁମ୍ଭେ କହିଅଛ ତୁହ ॥ ଗୋବିନ୍ଦ ବୋଇଲେ ପାର୍ଥ ଶ୍ରୀବତ୍ସ ବ୍ରାହ୍ମଣ । ପାଦେକ ମାଇଲା କୋପେ ଛାତିରେ ମୋ ଜାଣ ॥ ସେହୁ ଚିହ୍ନ ରହିଅଛି ନ ଯାଇ ଯେ ଲିଭି । ଅର୍ଜୁନ କହଇ ପୁଣି ମନମଧ୍ୟେ ଭାବି ॥ ଶ୍ରୀବତ୍ସ ବ୍ରାହ୍ମଣ କିଏ କାହାର କୁମର । ସେ କିପାଁ ଦେଲା ଛାତିରେ ଚରଣ ପ୍ରହାର ॥ କେଉଁ ଦିନ ଦେଲା ତାହା ନ କହିଲ ମୋତେ ।

ଧରିଅଣି ଦଣ୍ଡ ଥାନ୍ତି ମୁଁ ତୁମ୍ଭ ଅଗ୍ରତେ ॥ ଶ୍ରୀହରି ବୋଇଲେ ପାର୍ଥ ଏ ଯୁଗରେ ନୁହେ । ଅପାର କାଳର କଥା ଶୁଣ ଏବେ କହେ ॥ କହୁଅଛୁ ଆଦ ସତ୍ୟଯୁଗର ପ୍ରସଙ୍ଗ । ପ୍ରଜାପତି ନାମେ ବ୍ରହ୍ମା କଲ ମହାଯାଗ ॥ ଅଗ୍ନିରେ ଦିଅନ୍ତି ଋଷିଯାକ ମିଳି ହବି । ଅର୍ଘ୍ୟଥାଳୀ ଘେନି ପ୍ରଜାପତି ମନେ ଭାବି ॥ କାହାକୁ ମୁଁ ଆଗ ଅର୍ଘ୍ୟ ଦେବି ସର୍ବେ ତପୀ । ଅଠାଅଶୀ ସହସ୍ର ଯେ ଋଷି ମହାକୋପୀ ॥ ଜଣକୁ ଦେଲେ କରିବେ ସିନା ଘେନ୍ତୁ ଗୋଳ । ଏତେକ ଯାଞ୍ଚି ଥୋଇଲେ ଥାଳୀ ଭୂମିତଳ ॥ ତକ୍ଷଣେ ଅର୍ଘ୍ୟକୁ ଚଳେ ଭୃଗୁଋଷି ହସି । ବୋଇଲେ ବଶିଷ୍ଠ ଋଷି ଥାଉଁ ଉର-ବଶୀ ॥ ସେପାଇଁ ଥାଳୀ ଥୋଇଲ ଆନେ ପ୍ରଜାପତି । ବୁଝିଲେ ବଶିଷ୍ଠଋଷି ବ୍ରାହ୍ମଣ ଅଛନ୍ତି ॥ ନାରଦ ବୋଇଲେ ତାଙ୍କୁ କିପାଁ ଅର୍ଘ୍ୟ ଦେବ । ବେଶ୍ୟା ପୁଅ ହୋଇ ବଡ କେମନ୍ତେ ହୋଇବ ॥ ନୋହିଲା କଥା ସଭାରେ କହ ଭୃଗୁ ଆଣି । ମହତ ସାରି ବୁଡ଼ାଇ ଅଛ ଶୂଳପାଣି ॥ ଭୃଗୁ ବୋଇଲେ ସଭାରେ ଅଛନ୍ତି ବସି । ଉତ୍ତମ ଜାତି ଅଛନ୍ତି ଏଥି ଶକ୍ତି ଋଷି ॥ ଏହାଙ୍କୁ ଅର୍ଘ୍ୟ ଦେଲେତ ଦୋଷ ହେବ ନାହିଁ । ନାରଦେ ବୋଇଲେ ଶ୍ରେଷ୍ଠ ନହନ୍ତି ସେହି ॥ ଚଣ୍ଡାଳୀ କନ୍ୟା ଗର୍ଭରୁ ଅଛନ୍ତି ଜନମି । ତ ବୋଲି ତାହାଙ୍କୁ ଅର୍ଘ୍ୟ ଦେବ ପାଦେ ନମି ॥ ଭୃଗୁ ବୋଇଲେ ଏ ପରାଶରଙ୍କୁ ଯେ ଦିଅ । ବୁଝିଲେ ଅଛନ୍ତି ପ୍ରତ୍ୟକ୍ଷେ ଏ ବ୍ରହ୍ମମୟ ॥ ନାରଦେ ବୋଇଲେ ଏହା କହୁଛ କେମନ୍ତେ । ଶବରୀ କନ୍ୟା ଗର୍ଭରୁ ଜନମି ସାକ୍ଷାତେ ॥ ଜାଣୁ ଜାଣୁ ଅର୍ଘ୍ୟ ଦେବେ ତାହାଙ୍କୁ କିପରି । ନୋହିଲା କଥାକୁ ଆଣି କହ ତପସ୍ବୀ ॥ ଭୃଗୁ ବୋଇଲେ ବ୍ୟାସଙ୍କ ପାଦେ ଅର୍ଘ୍ୟ ଦିଅ । ଶୁଣି ନାରଦେ ହସିଲେ ହୋଇ ଟହ ଟହ ॥ ଭୃଗୁ ବୋଇଲେ ହେ ମୁନି ହସିଲ କିପାଇଁ । ବେଦବ୍ୟାସ ଋଷି ବିଷ୍ଣୁ ସମାନ ଅଟଇ ॥ ଲକ୍ଷ ଆଦ୍ୟ ପାଦରୁ ଯେ ଯେବେ ଜନ୍ମ ଥାନ୍ତି । ବିଷ୍ଣୁ ଅବତାର ଆଉ କାହିଁକି ହୁଅନ୍ତେ ॥ ନାରଦେ ବୋଇଲେ ଅର୍ଘ୍ୟ ନ ଯୋଗାଇ ତାଙ୍କୁ । ନୋହିବାର କଥା-ଯାକ କହୁଛ ଆମ୍ଭଙ୍କୁ ॥ ବୁଝିଲେ ବ୍ୟାସ ଅଛନ୍ତି କଇବର୍ତ୍ତୀପୁଅ । ତାଙ୍କୁ କି ବୋଲି ବୋଲୁଛ ଦେବା ଅର୍ଘ୍ୟପାଦ୍ୟ ॥ ସବୁ ଋଷିଙ୍କର ଜାତି ନେବାକୁ କହ କି । ଆମ୍ଭ କହିବା ବଚନ ଗୋଟି ପାଳିବ କି ॥ ଯାହାକୁ ଅର୍ଘ୍ୟ ଦେବା ତା କହିବା ହୋ ଶୁଣ । ଅଛନ୍ତିତ ବ୍ରହ୍ମା ବିଷ୍ଣୁ ଶିବ ତିନିଜଣ ॥ ଏ ତିନି ମୂର୍ତ୍ତି ବିଚାରି ଆଗେ ଅର୍ଘ୍ୟ ଦିଅ । ନାରଦଙ୍କ କଥା ଶୁଣି ବେଦବ୍ୟାସ ପୁଅ ॥ ଶ୍ରୀବତ୍ସ ତା ନାମ ସେହି ବ୍ୟାସ ଜ୍ୟେଷ୍ଠ-ବଳା । ତପ ଜପେ ପରିପୂର୍ଣ୍ଣ ଯୋଗେ ଅନର୍ଗଳା ॥ ବଂଶ ଉଦା ଶୁଣି କୋପେ ହୋଇ ଚମ ଚମ । ବୋଇଲେ ଏ ସଭାଯାକ ମୁନିତ ଉତ୍ତମ ॥ ନାରଦ ମୁନି ସ୍ବଭାବ ଜାଣତ ସକଳେ । ଆପଣା ମର୍ମ ନ ଖୋଳି ପର ମର୍ମ ଖୋଳେ ॥ ବୋଇଲେକ ଶୁଣ ହେ କଳହପ୍ରିୟ ମୁନି । ନୋହିଲେ ବୁଲନ୍ତ ତୁମ୍ଭେ କଳି ମୁଣି ଘେନି । ବାଟେ କଳି ଖୋଜନ୍ତ ଯେ ମୁଖେ କଳି କରି । ଦିନକେ ଲଗାଅ କଳି କୋଡ଼ିଏ ହଜାର ॥ ନୋହିଲା କଥାଯାକ ହୋଇଲା ବୋଲି କହ । କଳି ନ ଲାଗିଲେ ଶୁଖିଯାଏ ତୁମ୍ଭ

ଦେହ ॥ କଳି ଲଗାଇଦେଇ ଯେ ଯିବୁଯାଇ ଦୂରେ । ମୁଣ୍ଡି ଝାଙ୍କଦେଇ ନୃତ୍ୟ କର ଆନନ୍ଦରେ ॥ ତୁମ୍ଭକୁମାଣ୍ଡ ଏତିକି ବଡ଼ପଣ ଅଛି । ତେଣୁ ଏ ସଭାରେ ତୁମ୍ଭେ ଦେଉଅଛ ବାଛି ॥ ଆମ୍ଭବଂଶ କରଣୀକି ଦେଖାଉଛ ଏବେ । ତେଲରେ ମୁଣ୍ଡକୁ ବଙ୍କା କରିବ ଯେ ସର୍ବେ ॥ ବ୍ୟାସ ଯେ ଆମ୍ଭର ବାପ ସେହୁ କୁଳଶ୍ରେଷ୍ଠ । ତାଙ୍କ ପିତା ଶକ୍ତି ତାଙ୍କ ପିତା ଯେ ବଶିଷ୍ଠ ॥ ବଶିଷ୍ଠଙ୍କ ପିତା ଯେ ଅଟନ୍ତି ବେଦବ୍ରହ୍ମା । ବ୍ରହ୍ମାଙ୍କର ବାପ କେହୁ କହନ୍ତ ଶୁଣିମା ॥ ଏତେ ସାରକୁଳେ ବ୍ରହ୍ମା କାହିଁକି ଜନ୍ମିଲା । ବଡ଼ କୁଳକୁ କଳଙ୍କ ବ୍ରହ୍ମା କେତେକ କଲା ॥ ବ୍ରହ୍ମାଙ୍କୁ ଯାଉଛୁ ଆଗ ପଚାରି ଆସିବ । ଶ୍ରୀବସ୍ତ୍ର ଏପରି ତର୍କ କରନ୍ତେଣ ତମ୍ଭି ॥ ନାରଦେ ବୋଇଲେ ଏତେ ଛଳ ଯେବେ କଲ । ଆଜଯାଏ କାହିଁକି ନ ପୁଛୁ ଭୁଲି ହେଲ ॥ ଶୁଣି ଶ୍ରୀବସ୍ତ୍ର ବ୍ରାହ୍ମଣ ଗଲା କ୍ରୋଧ ହୋଇ । ବ୍ରହ୍ମାଙ୍କ ପୁରେ ମିଳିଲା ଅତିଶୀଘ୍ର ଯାଇ ॥ ଦେଖିଲାକ ପିତାମହ ସ୍ନାନ ସନ୍ଧ୍ୟା ସାରି । ଜପନ୍ତି ଗାୟତ୍ରୀମନ୍ତ୍ର ହୃଦେ ଦୃଢ଼ କରି ॥ ଏମନ୍ତ ସମୟେ ଯାଇ ଶ୍ରୀବସ୍ତ୍ର ମିଳିଲା । ବ୍ରହ୍ମାଙ୍କ ପଦ୍ମରେ ପଦ ଶୋଇ ଜଣାଇଲା ॥ ପୁଣି ଉଠି ଅପସରି ରହି ବ୍ରହ୍ମଋଷି । ନ ଶୁଣିଲେ ବ୍ରହ୍ମା ତାହା ଜପେ ଛନ୍ତି ବସି ॥ ଦେଖି ଶ୍ରୀବସ୍ତ୍ର ବ୍ରହ୍ମାଙ୍କୁ କଲା ମହାକୋପ । ବୋଇଲା ମର୍ତ୍ତ୍ୟରେ ପୂଜା ନୋହୁ ତୋର ରୂପ ॥ ଆଜଠାରୁ ପୂଜା କେହୁ ନ କରନ୍ତୁ ତୋତେ । ମୋଶାପେ ଅପୂଜା ହୋଇ ରହ ତୁ ଜଗତେ ॥ ମୁଁ ଯେ ଏତେ କ୍ରୋଧ ହୋଇ ଆସିଲଇଁ କହ । ତୁ ତାହାକୁ ନ ବୁଝିଲୁ ଧାତା ପଦ ବହ ॥ ଯାଉଛୁ ତୋ କଥା ହରି ଆଗେ ଜଣାଇବ । ତାଙ୍କଠାରୁ ନ୍ୟାୟ ଶୁଣି ବାହୁଡ଼ି ଆସିବ ॥ ଏତେକ ବୋଲି ଶ୍ରୀବସ୍ତ୍ର ଗଲେ କଇଲାସ । ଦେଖିଲେ ପଡ଼ିଛୁ ହର ଉମା ଖେଳରସ ॥ ଶ୍ରୀବସ୍ତ୍ର ମୁଣ୍ଡି ବସିଲେ ଯାଇ ଖେଳ ପାଶେ । ଆପଣା ବଂଶର କଥା କହିଲେ ହରଷେ ॥ ସେହି କଥାଯାକ କିଛି ନ ଶୁଣିଲେ ହର । ଖେଳର ଭୋଳେ ବୋଇଲେ ପୁଣି ମାର ମାଇ ॥ ତାହା ଦେଖି ଋଷି ଶାପ ଦେଲେ କ୍ରୋଧ ବହି । ମର୍ତ୍ତ୍ୟରେ ଶିବ ନିର୍ମାଲ୍ୟ ନ ଭକ୍ଷନ୍ତୁ କେହି ॥ ଏତେକ ବୋଲି ସେଠାରୁ ବୈକୁଣ୍ଠକୁ ଗଲେ । ଆମ୍ଭ ସନ୍ନିଧିରେ ଯାଇଁ ମୁନି ଉଭାହେଲେ । ଦେଖିଲେ ଯେ ନିଦ୍ରା-ଯାଇଅଛୁଁ ଆମ୍ଭେ ତହିଁ । ଶଙ୍ଖ ଚକ୍ର ଗଦା ପଦ୍ମ ଚତୁର୍ଭୁଜେ ବହି ॥ ଆମ୍ଭଙ୍କୁ ନିଦ୍ରିତ ହେବା ଦେଖି ମହାମୁନି । ମନରେ ପାଞ୍ଚିଲେ ଏତ ପ୍ରଭୁ ଅନ୍ତର୍ଯାମୀ ॥ ଆମ୍ଭର ଆସିବା କଥା ଜାଣିବେ ଏ ସିନି । ଛଳ କରିଛନ୍ତି ପରି ନୁହେ ନିଦ୍ରା ବୁଝି ॥ ସାକ୍ଷାତେ ଆମ୍ଭେ ନିଦ୍ରାକୁ ଆସିଅଛୁଁ ଡାକି । କରନ୍ତି ଏ ପ୍ରତୀକାର ସକଳ ପ୍ରାଣିଙ୍କି ॥ ନ କହିଲେ ଜାଣନ୍ତି ନ ଶୁଣନ୍ତି କହିଲେ । ପ୍ରାଣିଙ୍କର ମନ ଜାଣି ଦେଉଥାନ୍ତି ଫଳେ ॥ ଅନ୍ତର୍ଯ୍ୟାମୀ ପ୍ରଭୁ ଥାନ୍ତି ସଭିଙ୍କ ଅନ୍ତରେ । ନିଦ୍ରାରୁ ଉଠି ଆମ୍ଭଙ୍କୁ କହିବେ ସତ୍ବରେ ॥ ନାରଦ ଝିଙ୍କାଳ କରିଛନ୍ତି ଋଷି ଯାକୁ । ପ୍ରଭୁ ଅଜ୍ଞାଦେଲେ ଲୋକ ଦେବୁ ଆମ୍ଭେ ତାଙ୍କୁ ॥ ଆମ୍ଭର କରଣୀବଳ ଲୋକ ସିନା ଅଟେ । କରଣୀ ନ ଥିଲେ ଆତ୍ମା ନ ରହଇ ଘଟେ ॥ ଏଥିକୁ କରୁଣା ଇଷ୍ଟ କରିବେଟି ପ୍ରଭୁ । ଜଣାଇଲା

ଉତ୍ତାରୁ ଯେ ଜାଣିବେଁ ନା ସରୁ ॥ ମୋହର ମନ ମହିମା ରଖିବେ ଯେ ହରି । ସଭାରୁ ବେଲେ ସେ ପ୍ରଭୁ ଯିବେ ଚଳେ କରି ॥ ଏରୂପେ ମନରେ ପାଞ୍ଚି ଶ୍ରୀବତ୍ସ ବ୍ରାହ୍ମଣ ॥ ବ୍ୟାକୁଳ ହୋଇ କହିଲେ ଶ୍ରୀମୁଖରେ ରହିଣ । ମୋ କଥା ଶୁଣିବା ହେଉ ହେ ପ୍ରଭୁ ମୁକୁନ୍ଦ । କାହିଁକି ମୋର ବଂଶକୁ ଛନ୍ଦିଲେ ନାରଦ ॥ ଚେଣୁ କରି ଆସିଛୁ ମୁଁ ଆପଣଙ୍କୁ ନେଇ । ପ୍ରଜାପତି ଯାଗ ଯାଏ ଯିବା ଦସ୍ୟୁ ବଡ଼ ॥ ମୁନିଙ୍କ ବ୍ୟାକୁଳ ଶୁଣି ଅଚ୍ୟୁତ କହିଁ ପୁଣ । ଚଉଷ୍ଠରେ ଛଡ଼ାଗଲି ମୁଖେ ପଲଟେଣ ॥ ଅମ୍ଭ ଛଡ଼ା ଦେଖି ମୁନି ବ୍ୟାକୁଳ ହୋଇଲେ । ପଞ୍ଚମ ସ୍ୱରରେ ବସି ବେଦ ଉଚ୍ଚାରିଲେ ॥ ଉଚ ଚରଣ ଟେକିଲେ ବିପ୍ର ବେଦଧ୍ୱନି । ନ ଶୁଣିଲ ପ୍ରାୟ ଅମ୍ଭେ ହୋଇଲୁଁ ଯେ ତୁନି ॥ ଅମ୍ଭେ ନ ଉଠିବା ଦେଖି କୋପେ ମୁନିବର । ବୋଇଲେ ନୁହନ୍ତି ଅନ୍ତର୍ଯ୍ୟାମୀ ଏ ଠାକୁର ॥ ଠାକୁର ହେଲେକେହେଁ ଜାଣନ୍ତେ ମୋ ଦୁଃଖ । କଥାଏ କହୁ ହେଲେହେଁ କହନ୍ତେ ଶ୍ରୀମୁଖ ॥ ଯାହା ହେଲେ ହେଉ ଯଉଛ ମାରିବ ଯେ ମାତେ । କର୍ମ ଆଦରି ରହିବ ସୁଖେ ମନ ଦୃଢେ ॥ ଏତେ ବୋଲି ସେ ଦକ୍ଷିଣ ପାଦକୁ ଟେକିଲା । କ୍ରୋଧେ ଅମ୍ଭ ହୃଦେ ବିପ୍ରପାଦ ପ୍ରହାରିଲା ॥ ପାଦ ବାଜନ୍ତେ ଯେ ଉଠି ବସିଲୁଁ ଚଥାଇଁ । ଚାହିଁଲୁ ଚରି ଆଡ଼କୁ ନାହାନ୍ତି ଯେ କେହି ॥ ଦେଖିଲୁଁ ପାଖରେ ଏକା ଅଛନ୍ତି ବ୍ରାହ୍ମଣ । ପୁଛିଲୁଁ କେତେବେଳରୁ ଆସିଲେ ଆପଣ ॥ ବିପ୍ର ଗୋସାଇଁମାନଙ୍କୁ ଅଛଯାଏ ମୁହିଁ । ଦର୍ଶନ କରି ନ ଥିଲି ଛଡ଼ାଥିଲି ଯାଇ ॥ କେତେ ଭାଗ୍ୟ ହେଲା ମୋର ଚଳେ କଲ ଆସି । ପ୍ରତ୍ୟକ୍ଷେ ଦେଖିଲା ମୋର ନେତ୍ର ବ୍ରହ୍ମ ଋଷି ॥ ଏରୂପେ ପ୍ରଶଂସା କରି କହିଲୁ ଅନେକ । ପାଦ ଧୋଇ ଦେବା ପାଇଁ ଆଣିଲୁ ଉଦକ ॥ ଲାଜପାଇ ଦ୍ୱିଜବର ପଳାଇଲା ଡରି । ଅନେକ ଧନଞ୍ଜୟ ଅମ୍ଭେ ତାହା ଦେଖିକରି ॥ ଧାଇଁଯାଇ ସେ ବିପ୍ରଙ୍କୁ ଧରିଆଣି ବଳେ । ଚରଣ ଦୁଇ ଚପିଲୁ ଧୋଇ ଦେଇ ଜଳେ ॥ ସେ ବିପ୍ର ପାଦ ଉଦକ ଗର୍ଭେ ଦେଲୁଁ ଛେପି । ଜିମୂତ ଜଳ ମଥାରେ ଦେଲୁ ଅମ୍ଭେ ଲେପି ॥ ଲେଉଟି ଧରି ଆଣିଲୁ ବିପ୍ର ପାଦରଜ । ଦେହ ଯାକ ବୋଲି ହେଲୁ ହେ ପାଣ୍ଡୁ ଆତ୍ମଜ ॥ କର୍ପୂର କସ୍ତୁରୀ ଗନ୍ଧ ଶ୍ରୀ କରରେ ଆଣି । ଦେହ ଯାକ ବୋଲି ଦେଇ ବସାଇଲୁଁ ପୁଣି ॥ ଅମ୍ଭର ଏମନ୍ତ ସେବା ଦେଖି ବିପ୍ର-ଭରି । ପଳାଇ ପଡ଼ିଲା ଖଣ୍ଡଦୂରେ ଝୁଣ୍ଟିକରି ॥ ଧାଇଁ ଧାଇଁ କଲେ ଟେକିଧରି ବିପ୍ର ଗାତ୍ର । ସ୍ୱହସ୍ତେ ଦକ୍ଷିଣୀ ଧରି କହିଲୁ ବସ୍ତ୍ର ॥ ଶ୍ରୀବତ୍ସ ବିପ୍ରଙ୍କ ପାଦ ଶ୍ରୀକରେଆଉଁଷି । ବୋଇଲୁଁ ଯେ କେତେ କଷ୍ଟ ପାଇଲି ହେ ଋଷି ॥ ବୃହିଲେତ ବଜ୍ରସମ ଅଟେ ଅମ୍ଭ ହୃଦ । ନ ଜାଣି ଦେଲ କଥାଉ ଥିବ ତୁମ୍ଭ ପାଦ ॥ କେତେ ଶ୍ରମ ପାଇ ଚଲି ଆସି ଥିବ ଏଥେ । ଏତେ ବୋଲି ବିପ୍ର ପାଦ ଘଷିଲୁଁ ସ୍ୱହସ୍ତେ ॥ ବୋଇଲୁଁ ଶ୍ରୀବତ୍ସ ନାମ ତୁମ୍ଭ ସେଇ ମୋର । ଭରିବେ ଶ୍ରୀବତ୍ସ ନାମ ହୃଦ ଭିତ ପୁର ॥ ତୁମ୍ଭେ ଯେ ଶ୍ରୀବତ୍ସ ବିପ୍ର କୁଳସୁଧାକର । ଚଳେ ଚରଣ ପଦ୍ମ କଲ ମୋ ମନ୍ଦିର ॥ ଅମ୍ଭର ଏ ଶାନ୍ତଭାବ ଦେଖି ମୁନିବର । ନ ମିଳେ ପାଦ ପଦ୍ମରେ କରି ନମସ୍କାର ॥ ଗାଲେ ମାରି ହୋଇ

ବସନ୍ତି ବାସମୋଡ଼ଲେ ହର । ନ ଛାଡ଼ି ଗୋବିନ୍ଦଙ୍କୁ ମୁଁ ଦେଇ ପଶ୍ଚବ ॥ ପାଦ ପ୍ରହାରିଲି ମୂର୍ଖ ପଣେ ପ୍ରଭୁ ହୃଦେ । କେତେ ଯେ ପାପ ଅର୍ଜିଲି କେନା ଅପରାଧେ ॥ କ୍ଷ କରିବ ନ କଣାଇ ମୋତେ ବୁଦ୍ଧି ବାଟ । ବିଷ୍ଣୁ ଠାରେ ଅପରାଧୀ ହେଲି ମୁଁ ପାପିଷ୍ଠ ॥ ହେ ମହାପ୍ରଭୁ ଏମନ୍ତ ଅଜ୍ଞା ମୋତେ କର । ଏ ଦୁଷ୍ଟ ଆତ୍ମା ମୋ ଯାଉ ଛାଡ଼ି କଳେବର ॥ ଏରୂପେ ଅତି ବ୍ୟାକୁଳ ହୁଅନ୍ତେ ଶ୍ରୀବତ୍ସ । ଜାଣିଲେ ବିପ୍ରର କଥା ମନ କରି ସ୍ୱଚ୍ଛ ॥ ବୋଇଲେ ଶୁଣିମା ହେଉ ଅହେ ବିପ୍ରମଣି । ତୁମ୍ଭ ପ୍ରାୟ କୁଳ-ଶ୍ରେଷ୍ଠ ନାହିଁ ଏ ଧରଣୀ ॥ ସମସ୍ତ ଜାତିରେ ବିପ୍ର ଜାତି କୁଳଶ୍ରେଷ୍ଠ । ବ୍ରାହ୍ମଣଙ୍କୁ ନ ମାନେ ଯେ ସେ ବଡ ପାପିଷ୍ଠ ॥ ସବୁଜାତି ଦୋଷ କଲେ ଦଣ୍ଡମଣ୍ଡ ଅଛି । ବିପ୍ର ଦୋଷ କଲେ ଦଣ୍ଡି ନ ପାରେ କରସ୍ପୃ ॥ ବିଷ୍ଣୁ ହେଲେହେଁ ବିପ୍ରଙ୍କ ନ ପାରେ ମୁଁ ଦଣ୍ଡି । ମହାପାପ ବିପ୍ର ଏକା ପାରିଲେ ଯେ ଖଣ୍ଡି ॥ ଏଥିକୁ ହେ ମୁନି ବିପ୍ର କଦାପି ନକର । ବହିବି ମୁଁ ତୁମ୍ଭ ପାଦ ଚିହ୍ନ ହୃଦୟରେ । ଅଷ୍ଟାଦଶ ଶାସ୍ତ୍ରରେ ସେ ଚିହ୍ନ ଲେଖାଯିବ । ଭକ୍ତଙ୍କୁ ମୋର ଝଟକି ଚିହ୍ନ ବସୁଥିବ ॥ ବିପ୍ରଙ୍କର ପାଦରଜ ଅନ୍ତ ନୋହେ ଜାଣ । ଯା ସ୍ପର୍ଶେ ପବିତ୍ର କରେ ତା ବଂଶକୁ କାରଣ ॥ ଯାବତ ମଙ୍ଗଳ ଆସି ମିଳଇ ଯେ ତାକୁ । ଦେହ ଅନ୍ତେ ସେହି ଲୋକ ଚଳଇ ସ୍ୱର୍ଗକୁ ॥ ଯେ ଜନ ଶିରେ ନିର୍ମଳ କରି ଜାଣ ଭକ୍ତ୍ୟେ । ବ୍ରାହ୍ମଣର ପାଦରଜ ଯେବେନେ ଶିରସରେ ॥ ତାହାର ଦେହରେ କ୍ଳେଶମାନ ନ ରହଇ । ଆମ୍ଭର ଦୟା ତାହାକୁ ଅନୁକ୍ରମେ ଥାଇ ॥ ଆବର ମଧ୍ୟ କହିଲୁ ଶୁଣ ମୁନିବର । ବିପ୍ରପାଦରଜ ଘେନି କଲୁ ମୋ ଶରୀର ॥ ଏଥିକୁ ନ କର ବିପ୍ର ମନେ ଆଉ ଶଙ୍କା । ବିପ୍ରଙ୍କ ଲାଗି ସଂସାରେ ଜନମଇ ଏକା ॥ ବିପ୍ରଙ୍କ ଆଶିଷୁଁ ମୋର ହୃଦେ ଲକ୍ଷ୍ମୀ ସିଦ୍ଧି । କେଣୁ ମୋତେ ଶ୍ରୀସ୍ୱାମୀନାଥ ବୋଲନ୍ତି ତ୍ରିପୁରୀ ॥ ଏତେକ କହି ବିପ୍ରଙ୍କୁ ଆମ୍ଭେ ଘେନି ସଙ୍ଗେ । ଗରୁଡ଼ ପିଠିରେ ବସି ଚଳିଗଲୁଁ ବେଗେ ॥ ମୁନିଙ୍କର ବେନିପାଦ ପଦ୍ମକରେ ଧରି । ଆଲିଙ୍ଗି ଦେଲୁଁ ବଥାଉ ଥିବ ବୋଲି କରି ॥ ଯେତେ ଋଷି ପ୍ରଜାପତି ଯାଗେ ବସିଥିଲେ । ଶ୍ରୀବତ୍ସ ମୁନିଙ୍କି ସର୍ବେ ଧନ୍ୟଧନ୍ୟ କଲେ ॥ ବୋଇଲେ ବଶିଷ୍ଠ ବଂଶ ଯେବେ ନୁହେ ଶ୍ରେଷ୍ଠ । ବିଷ୍ଣୁ କେସନେ ବହନ୍ତେ ମୁନି ପାଦ ସ୍ପୃଷ୍ଟ ॥ ଏତେକ ବୋଲି ମୁନିଙ୍କି କଲେ ସର୍ବେ ସ୍ତୁତି । ଆମ୍ଭେ ବୋଇଲୁଁ ନାରଦ ଅହେ ବ୍ରହ୍ମପତି ॥ ବ୍ୟାସଙ୍କର ବଂଶ ତୁମ୍ଭେ ଶୁଣିଲ କିପାଇଁ । ରଜରେ କି ବୀର୍ଯ୍ୟେ ବୀର୍ଯ୍ୟେ ବ୍ରହ୍ମ ଯେ ଅଟଇ ॥ ବ୍ରହ୍ମ ପ୍ରକାଶୁଁ ଯାବତ ସ୍ଥାବର ହୁଏ ଜନ୍ମ । ବର୍ଣ୍ଣଭେଦେ ଉଚ ନୀଚ ହୁଅନ୍ତି ଯେ ଜନ ॥ ବ୍ରାହ୍ମଣ ବୀର୍ଯ୍ୟରୁ ଜାତ ହୁଅନ୍ତି ବ୍ରାହ୍ମଣ । ବିଶ୍ୱରେତ ସ୍ୱୟଂ ବ୍ରହ୍ମ ଦେବ ନାରାୟଣ ॥ ନାରାୟଣଙ୍କ ନାଭିରୁ ବ୍ରହ୍ମା ଉତପତ୍ତି । ବ୍ରହ୍ମାଙ୍କ ବୀର୍ଯ୍ୟରୁ ଜାତ ବଶିଷ୍ଠ ଯେ ଯତି ॥ ବଶିଷ୍ଠ ଋଷିଙ୍କ, ପୁତ୍ର ଶକ୍ତ୍ରି ମହାମୁନି । ଶକ୍ତ୍ରି ଋଷିଙ୍କର ପୁତ୍ର ପରାଶର ଜ୍ଞାନୀ । ପରାଶର ବୀର୍ଯ୍ୟ ଜାତ ହେଲେ ବେଦବ୍ୟାସ । ସେ ବ୍ୟାସ ଅଟନ୍ତି ଜାଣ ନାରାୟଣ ଅଂଶ ॥ ବ୍ୟାସମୁନିଙ୍କର ପୁତ୍ର ଏ ଶ୍ରୀବତ୍ସ ମୁନି । ହୃଦେ ବହୁଛି ମୁଁ ତାଙ୍କ

ପାଦ ଥାଅ ଛନ୍ତି ॥ ଏତେକ ବୋଲି ବଚନ ଭାଙ୍ଗି ଦେଖାଇଲେ । ଶ୍ରୀବତ୍ସ ମୁନିଙ୍କ ପାଦ ଦେଖି ହେ ବୋଇଲେ ॥ ଦେଖିଣ ତା ପଣ୍ଡିଯାକ ଆଚମ୍ଭିତ ହେଲେ । ଶ୍ରୀବତ୍ସ ମହାମୁନିଙ୍କ ବହୁ ସ୍ତୁତି କଲେ ॥ ଶ୍ରୀବତ୍ସ ବ୍ରାହ୍ମଣ କଥା ଶୁଣିଲେ ହେ ପାର୍ଥ । ଭକତି ମୋହର ବନ୍ଧୁ ମୁଁ ଅନାଥ ନାଥ ॥ ନାମରତ୍ନ ଗୀତାରେ ଏ ଅଟେ ଦିବ୍ୟରସ । ଭାବରେ ଭଣିଲେ ଏହା ଦୀନକୃଷ୍ଣଦାସ ॥

ଇତି ଶ୍ରୀ ନାମରତ୍ନ ଗୀତାୟାଂ ଶ୍ରୀହରି ଅର୍ଜ୍ଜୁନ ସମ୍ବାଦେ ଶ୍ରୀବତ୍ସ
ଛାଗ ବୃତ୍ତାନ୍ତ କଥନେ ନାମ ଅଷ୍ଟଷଷ୍ଠିତମୋଽଧ୍ୟାୟଃ ।

---

## ଊନସପ୍ତତିତମ ଅଧ୍ୟାୟ ।

ଶୁଣି ସଂଶୟ ଅର୍ଜ୍ଜୁନ ମନୁ ଗଲା ଛାଡି । ଶୁଣିଲେକ ଶ୍ରୀମୁଖରୁ ବାର୍ତ୍ତା ଯାଏଁ ପଡି ॥ ଉଠିକରି ଭକ୍ତି ହୋଇ ନାନା ସ୍ତୁତି କଲେ । ହରେ ରାମ କୃଷ୍ଣ ଇତି ମନ୍ତ୍ର ଉଚାରିଲେ ॥ ଗୋବିନ୍ଦ ବୋଇଲେ ଶୁଣ ବୀରବର ପାର୍ଥ । ଏହି ଉକ୍ତ ନାମରୁ ଯେ ସବୁ ନାମ ଜାତ ॥ ଶ୍ରେଷ୍ଠ ନାମର କେ କରି ନ ପାରଇ ଅନ୍ତ । ଏ ଇତି ନାମକୁ ପଢେ ଯେଉଁ ଜନ ନିତ୍ୟ ॥ ସେ ନର ବଦନ ଗୋଟି ସଂସାରରେ ସାର । ସାବଧାନେ ଶୁଣ ଅହେ ପାର୍ଥ ଧନୁର୍ଦ୍ଧର ॥ ଯେଉଁ ପ୍ରାଣୀ ହସ୍ତେ କରେ ବିଷ୍ଣୁ ଧର୍ମ କର୍ମ । ସେ ହସ୍ତକୁ ସାରସ୍ୱତ ବୋଲନ୍ତି ଉତ୍ତମ ॥ ଯେ ବିଷ୍ଣୁଙ୍କ ଧ୍ୟାନ କରି ଚର୍ମ ନେତ୍ରେ ଦେଖେ । ସେ ନେତ୍ରକୁ ଦିବ୍ୟ ଚକ୍ଷୁ ବୋଲି ନର ଲୋକେ ॥ ବିଷ୍ଣୁ ପୁରାଣକୁ କର୍ଣ୍ଣେ ଯେଉଁ ଜନ ଶୁଣେ । ସେ କର୍ଣ୍ଣକୁ ସାରସ୍ୱତ ମଧ୍ୟେ ମୁହିଁ ଗଣେ ॥ ବିଷ୍ଣୁ ପାଦରେ ନମଇ ଯାହା ଶିର ଗୋଟି । ଶିରଙ୍କ ମଧ୍ୟରେ ସାର ଅଟେ ସେ ଶିରଟି ॥ ବିଷ୍ଣୁଙ୍କ କଳ୍ପ ଅନ୍ତକୁ ସଂସାରେ ଯେ ଲୋକ । ତାହାଙ୍କ ତୁଳଂ ନା ପ୍ରାଣୀ ନୋହେ ତୀର୍ଥଯାକ ॥ ମୋର ଦଶ ଅବତାର ମୂର୍ତ୍ତି ଜାଣ ଏକ । ମତ୍ସ୍ୟରୂପ ଧରି ମୋକ୍ଷ କରେ ସର୍ବ ଲୋକ ॥ କୂର୍ମ ଅବତାର ଧରି ପୃଥ୍ୱୀ ଭାର ନାଶେ । ବରାହ ରୂପ ଧରିଣ ଦୈତ୍ୟବଳ ଧ୍ୱଂସେ ॥ ନରସିଂହ ଅବତାରେ ମହା ବିଷ୍ଣୁ ରୂପୀ । ବାମନ ରୂପରେ ବଳୀ ରାଜା ଛଳେ ନୃପି ॥ ପରଶୁରାମ ରୂପରେ ପୃଥ୍ୱୀ ରକ୍ଷା କରି । ଶ୍ରୀକୃଷ୍ଣ ମୂରତି ଧରି କଂସଦର୍ପ ହରି । ରାମ ଅବତାରେ ନାଶି ରାବଣର ବଂଶ । ବଉଦ୍ଧ ରୂପେ ହୋଇବି ନୀଳଗିରି ଈଶ ॥ ଦୋଷ ଅନୁରୂପେ ଜନେ ଦଣ୍ଡ ଦେଉ ଥିବ । ଦୁଷ୍ଟ ଜନଙ୍କୁ ସଂହାରି ସୁଜନ ପାଳିବ ॥ ଯାହାକୁ ଯେବଣ ଦଣ୍ଡ ବିହିତ ଶାସ୍ତ୍ରରେ । ତାହା ମୁଁ କହୁଛି ପାର୍ଥ ତୋହର ଆଗରେ ॥ ମାତା ପିତା ଶ୍ରୀଗୁରୁ ଯେ ଦେବତା ବ୍ରାହ୍ମଣ । ଏହାଙ୍କ ଦୋଷ ଦେଖିଣ ନ ଦଣ୍ଡିବ ପୁଣ ॥ ଭୃତ୍ୟ ଲୋକ ଦୋଷ ଯେବେ କରନ୍ତି ନ ଜାଣି । ମାତ୍ର ଲୋକ ହାତେ ତାକୁ ଦଣ୍ଡ ଦେବ ଆଣି ॥ ଯୋଇନ୍ତ୍ରୀ ଦୋଷ କରିଲେ କାଟିବ ତା ବାଳ । ବନ୍ଧୁ ଦୋଷ କଲେ ବାକ୍ୟ ନ ଦେବ କେବଳ ॥ ରାଇ ଦୋଷ କଲେ ତାକୁ ଭନ୍ନ

କରି ଦେବ । ଈର୍ଷ୍ୟା ଦୋଷ କଲେ ତାକୁ କଥା ନ କହିବ ॥ ବୃଦ୍ଧତା ଦୋଷ କଲେ ତା ନ ମହିବ ମୁଖ । ଖଳ ଦୋଷ କଲେ ତାକୁ ନ ରଖିବ ପାଖ ॥ ପଣ୍ଡଶା ଦୋଷ କରିଲେ ପ୍ରଶଂସା କରିବ । ମୂର୍ଖ ଦୋଷ କଲେ ତାକୁ ଆପଣେ ଦଣ୍ଡିବ ॥ କର୍ତ୍ତବ୍ୟ ନ ଚଳିଲେଟି କାଢ଼ି ଦେବ ଘରୁ । ନ ମାଇଣ ଉଞ୍ଛାଇବ ଦୋଷ କଲେ ଗୋରୁ ॥ ପ୍ରଜା ଦୋଷ କଲେ ତାରି କାଟିନେବ କୃଷି । ଜାମାତା ଦୋଷ କଲେ ସେ ନ କରିବ ତୁଷି ॥ ସ୍ତ୍ରୀମାନେ ଯେବେ ପାର୍ଥ କରିବେଟି ଦୋଷ । ଘରରେ ରଖି ନ ଦେବ ତାଙ୍କୁ ଅନ୍ନ ଗ୍ରାସ ॥ ଗୁରୁର ଦୋଷ କରିଲେ ନ କରିବ ମାନ୍ୟ । ଏଛନ୍ତି ମାଧବଙ୍କ ଦଣ୍ଡ ହୁଏ ତାକୁ ଜାଣ । ନମନ୍ତ୍ରିତ ଦୋଷ କଲେ ସେବା ଛଡାଇବ । ପାଷ ଦୋଷ କଲେ ତାକୁ ଦ୍ୱାର ଭସ୍ମେଇବ ॥ କୁଳବଧୂମାନେ ଯେବେ କରିବେଟି ଦୋଷ । ପ୍ରସନ୍ନ ନ କରି ତାହା ସହିବ ଅବଶ୍ୟ ॥ ନ୍ୟୂନାଧିକ କଲେ ଦାଣ୍ଡେ ଲଜ୍ଜା ଦେବ ପୁଣି । ସମ୍ମୁଖ ଦୋଷ କଲେ ନ ଦେବ ଶିକ୍ଷା ପାଣି ॥ ସୁଆରମାନେ କରିବେ ଯେବେ ଜାଣ ଦୋଷ । ତାହାଙ୍କ ହସ୍ତରୁ ଭୋଗ ନ କରିବ ଗ୍ରାସ ॥ ଅରକ୍ଷିତ ଲୋକ ଯେବେ କରିବଟି ଦୋଷ । ତାହାଙ୍କୁ ଭୟ ଦେଖାଇ କହିବ ବିଶେଷ । କରଣ ଦୋଷ କଲେ ତା ଜୀବିକା ହରିବ । ବାକ୍ୟ ଦୁର୍ବଳ ଲୋକଙ୍କୁ ସଙ୍ଗରୁ କାଢ଼ିବ ॥ ମିତ୍ର ଦୋଷ କଲେ ନ କରିବଟି ଆଦର । ମହାରଣା ଦୋଷ କଲେ ବାସନ୍ଦବ ଘର ॥ ମାମୁଁ ଦୋଷ କଲେ ନ କରିବ ନିମନ୍ତ୍ରଣ । ଏକେକେ ଆଦର ଊଣା ହୁଏ ତାର ଜାଣ ॥ ଦଣ୍ଡାଶୀ ଦୋଷ କଲେ ତା ମର୍ଦ୍ଦନ ବାସନ । ଗଉଡ଼ଙ୍କୁ ଦୋଷ କଲେ ଛଡ଼ାଇବ ଦୁଗ୍ଧ ॥ ତନ୍ତୁକୁଳ ଯେବେ ପାର୍ଥ କରିବେଟି ଦୋଷ । ତାହାଙ୍କର ତନ୍ତ କାଠ କାଢ଼ିବ ଅବଶ୍ୟ ॥ ଧୀବର ଦୋଷ କଲେଟି ହରିବ ତା ଜାଲ । ବାଳକ ଦୋଷ କଲେ ସେ କରିବଟି ଗୋଳ ॥ ଅବର ଯେତେକ ଜାତି ଅଛନ୍ତି ସଂସାରେ । ସେ ଦୋଷ କଲେ ନ ମାରି ଦହିବ ବାକ୍ୟରେ ॥ ଜଡ଼ ଦୋଷ କଲେ ତାକୁ ନ କହିବ ମଳି । ନ ଗଣ ବୋଇଲେ ସେତୁ ବସନ୍ତ ନା ଭାଳି ॥ ଅହେ ପାର୍ଥ ନାମ ରତ୍ନ ଗୀତା ମହାରତ୍ନ । କହିଲି ସଂପୂର୍ଣ୍ଣ କରି ପରମପଦାର୍ଥ ॥ ଏହାକୁ ଯେ ଜନ ନିତ୍ୟ କଣ୍ଠରେ ଧରଇ । ଅନ୍ତ କାଳରେ ମୋହର ପୁରରେ ବସଇ ॥ ପରମ ପଦାର୍ଥ ଏହୁ ଗୀତା ମଧ୍ୟେ ସାର । ନାମରତ୍ନଠାରୁ ରତ୍ନ ବଳି ନାହିଁ ମୋର ॥ ତୁମ୍ଭ ଏହାକୁ ଯଦ୍ୟପି ଯତନେ ରଖିବୁ । ଏ ଭବ ସମୁଦ୍ରୁ ମୁକ୍ତେ ପାରି ହୋଇ ଯିବୁ ॥ ଶୁଣିକରି ଅର୍ଜୁନ ହୋଇଲେ ସନ୍ତୋଷ । ନାମରତ୍ନଗୀତା ଗ୍ରନ୍ଥ ଏଥୁ ହେଲା ଶେଷ ॥ ନମୋ ନମୋ ଦାମୋଦର ଲକ୍ଷ୍ମୀ ଦେବାବର । ନମୋ ନମୋ ନନ୍ଦବାଳ ଗୋପାଳ ଶରୀର ॥ ନମୋ ନମୋ ବନମାଳି ଗୋପୀନାଥ ମୂର୍ତ୍ତି । ନମୋ ନମୋ ଉଦ୍ଧବାହା ଦାରୁବ୍ରହ୍ମ ମୂର୍ତ୍ତି ॥ ନମୋ ନମୋ ବୃନ୍ଦାବନ ଚନ୍ଦ୍ର ଶ୍ରୀ ଗୋବିନ୍ଦ । ନମୋ ନମୋ ଶିଶୁପାଳନାଶନ ମୁକୁନ୍ଦ ॥ ନମୋ ରୁକ୍ମିଣୀବଲ୍ଲଭ ନମୋ ଦଇତାରି । ନମସ୍ତେ ନମସ୍ତେ ପ୍ରଭୁ ଶଙ୍ଖାଦିଧାରୀ ॥

ନମସ୍ତେ ନମସ୍ତେ ପ୍ରଭୁ ପଙ୍କଜଲୋଚନ । ପୂର୍ଣ୍ଣାନନ୍ଦ ଅବ୍ୟୟ ପତିତପାବନ ॥ ସକଳ ଜୀବହୃଦରେ ତୁମ୍ଭ ଆତ୍ମା ଏକା । ପୁରାଣରେ ବୋଲାଉ ତୁ ଗୁରୁ ବେଦଗୀତା ॥ ଶିଳାଙ୍କ ମଧ୍ୟରେ ଅଛୁ ତୁହି ଶାଳଗ୍ରାମ । ଆଶ୍ରମ ମଧ୍ୟେ ବୋଲାଇ ବଦରିକାଶ୍ରମ ॥ ଦେବତାମାନଙ୍କ ମଧ୍ୟେ ତୁହି ଦେବ ଇନ୍ଦ୍ର । ମନୁଷ୍ୟମାନଙ୍କ ମଧ୍ୟେ ବୋଲାଉ ନରେନ୍ଦ୍ର ॥ ସପ୍ତସିନ୍ଧୁଙ୍କ ମଧ୍ୟରେ ଅଛୁ କ୍ଷୀରସିନ୍ଧୁ । ନକ୍ଷତ୍ରଗଣଙ୍କ ମଧ୍ୟେ ତୁହି ପୂର୍ଣ୍ଣ ଇନ୍ଦୁ ॥ ଗିରିଙ୍କ ମଧ୍ୟେ ବୋଲାଉ ତୁହି ମେରୁ ଗିରି । ମୋଠାରେ କରୁଣା କର ଅଟେ ନରହରି ॥ ମୁହିଁ ହୀନ କୃଷ୍ଣ ଦାସ ତୋ ଦାସର ଦାସ । ତୋ ଚରଣପଦ୍ମରେ ସ୍ଥାନ ଦେବ ପୀତବାସ ॥ ତୋହର କୃପାରେ କଲି ଏଗ୍ରନ୍ଥ ସମ୍ପୂର୍ଣ୍ଣ । ପଢ଼ିବା ଲୋକର ହେଉ ମନବାଞ୍ଛା ପୂର୍ଣ୍ଣ ॥

ଇତି ଶ୍ରୀ ନାମରତ୍ନଗୀତାସୁ ଶ୍ରୀହରି ଅର୍ଜୁନ ସମ୍ବାଦେ ଦୋଷାଦୋଷ
ବର୍ଣ୍ଣନୋ ନାମ ଊନସପ୍ତତିତମୋଽଧ୍ୟାୟଃ ।

---

ତୃତୀୟ ନାମରତ୍ନ ଗୀତା ସମ୍ପୂର୍ଣ୍ଣ ।



